# ଝିପିଝିପି ବର୍ଷା

ଗୁଲ୍‌ଜାର



ଅନୁବାଦ : ମନୁ ଦାଶ



୧୯୫୬ରେ ଜନ୍ମଗ୍ରହଣ କରିଥିବା ମନୁ ଦାଶ ଉଭୟ ଓଡ଼ିଆ ଏବଂ ଇଂରାଜୀ ଭାଷାରେ ହିଁ ଲେଖନ୍ତି । ତାଙ୍କ ସୃଜନ ପ୍ରକ୍ରିୟାର ଅୟମାରମ୍ଭ ହୁଏ ୧୯୭୫ରେ 'ଅନାମ କାବ୍ୟ ଆନ୍ଦୋଳନ'ରେ ଯୋଗଦାନ ପରେ । ପରବର୍ତ୍ତୀ ସମୟରେ ସାହିତ୍ୟର ବିଭିନ୍ନ ବିଭାଗରେ ସେ ତାଙ୍କ ସୃଜନ କ୍ଷମତାର ପରିଚୟ ଦେଇଛନ୍ତି । ତାଙ୍କ ରଚନା ଭିତରେ ଅଛି ଦୁଇଟି କବିତା ସଂଗ୍ରହ (ଆଞ୍ଜୁଳେ ସମୁଦ୍ରର ଢେଉ, କଳା ହରିଣ); ଚାରିଟି ପ୍ରବନ୍ଧ / ଆଲୋଚନା ବହି (ଗୁଡ଼୍‌ଲୀର ଜେଜେବାପା, ପ୍ରିୟ ଗଣକ, ଭୀରୁ ଭାରତ ଓ ବଂଚିବାର ବାଟ); ଗୋଟିଏ ଗଳ୍ପ ସଂକଳନ (କଣ୍ଢେଇ ନାଚ); ଗୋଟିଏ ଭ୍ରମଣ ବୃତ୍ତାନ୍ତ (କବିତା ଯାତ୍ରା); ଚାରୋଟି ଅନୁବାଦ ସଂଗ୍ରହ (ମୋହନ ଦାସ, ଅଦୃଶ୍ୟ ମାନଚିତ୍ର, ବାଘ ଏବଂ ଝିପି ଝିପି ବର୍ଷା); ତିନୋଟି ସଂପାଦନା (ନାଇଣ୍ଟି- ନାଇନ୍ ୱାର୍ଡସ୍, ଧଉଳି ରିଭ୍ୟୁ ଏବଂ ବସନ୍ତର ନିଛକ ଜିଲ୍ଲାରେ (ସହ-ସଂପାଦନା); ଓ ମଞ୍ଚ ତଥା ବେତାର ନାଟକ ।

ପରମ୍ପରା ସହ ଆଧୁନିକତାର ସଫଳ ସମନ୍ୱୟ ତାଙ୍କ କବିତାରେ ଦେଖିବାକୁ ମିଳିଥାଏ । କଳା ପ୍ରତି ପ୍ରତିବଦ୍ଧ ଥିବା କବି ମନୁ ଦାଶଙ୍କ ସୃଜନ ଦିଗ୍‌ବଳୟ ବେଶ୍ ପ୍ରସାରୀ । ସେଇପରି ତାଙ୍କର ରୁଚି ମଧ୍ୟ ଅପରିସୀମ । ଦୀନକୃଷ୍ଣଙ୍କଠାରୁ ଗିନ୍‌ସବର୍ଗ, କାଭାଫିଂ, ଓ ବୋର୍ଖେସ୍‌ଙ୍କ ଯାଏ, ଜଗନ୍ନାଥ ପଣ୍ଡାଙ୍କ ପେଣ୍ଟିଙ୍ଗ୍ ଠାରୁ ମଜିଦ୍ ମାଜିଦି ତଥା ଆବାସ୍ କିଆରୋ ସ୍ତାମୀଙ୍କ ଚଳଚ୍ଚିତ୍ର ଯାଏ; ଭର୍ତ୍ତୃହରିଙ୍କ 'ଶୃଙ୍ଗାର ଶତକ' ଠାରୁ ଦାର୍ଶନିକ ଜିଜକ୍‌ଙ୍କ ଯାଏ ତାଙ୍କର ଚାରଣ ଭୂମି ।

'ଝିପିଝିପି ବର୍ଷା' ତାଙ୍କର ଚତୁର୍ଥ ଅନୁବାଦିତ କବିତା ସଂକଳନ ।

ଝିପିଝିପି ବର୍ଷା (କବିତା ସଂକଳନ)
ମୂଳ ହିନ୍ଦୀ : ଗୁଲ୍‌ଜାର
ଓଡ଼ିଆ ଅନୁବାଦ : ମନୁ ଦାଶ

ପ୍ରକାଶକ : **ପକ୍ଷୀଘର ପ୍ରକାଶନୀ**
ସେକ୍‌ଟର୍‌-୧/୧୧୭, ନୀଳାଦ୍ରି ବିହାର, ଭୁବନେଶ୍ୱର, ଓଡ଼ିଶା
ଦୂରଭାଷ: ୯୮୬୧୦୧୦୮୮୭

ପ୍ରଥମ ସଂସ୍କରଣ : ୨୦ ଜୁନ୍, ୨୦୧୦
ମୂଲ୍ୟ : ୧୦୦ ଟଙ୍କା

**JHIPI JHIPI BARSA**
Poems by **Gulzar**
Translated from Hindi into Oriya by Manu Dash

Publisher : **Pakshighar Prakashani**
Sec-1/117, Niladri Vihar, Bhubaneswar, Odisha

Cover Painting : Arpana Caur
Cover Design & Lay-out : Saroj Bal

Drawings & Paintings : Arpana Caur, Dilip Chitre, Dhruv Mistry, Sarita Chouhan, Jagannath Panda, Ananya Banerjee, Manu Dash



First Edition : 20 June 2010
Price : **Rs. 100/-**

**If poetry comes not as naturally as leaves to a tree it had better not come at all.**

***- John Keats***
Letter to John Taylor, 27 Feb. 1818

ଏଥର,
ଅନରବରତ ମୋତେ ଘେରି ଯାଇ
ଆକ୍ତା ମାକ୍ତା କରୁଥିବା ପ୍ରିୟ ସ୍ୱପ୍ନ
ଏବଂ ନୀରବତାମାନଙ୍କୁ
..........................................................................................

## କ୍ରମ

## ସ୍ମୃତିର ସବୁଜ ଅରଣ୍ୟ...



## କେବେ ତୁମେ ଜହ୍ନର ବେଲୁନ୍, କେବେ ମୁଁ ରାତିର ଆକାଶ...

## କବି, କବିତା, ସ୍ୱପ୍ନ ଓ
## ମୃତ୍ୟୁର ଶୀତଳ ସ୍ୱର...

## ଅନୁବାଦକର ଅନୁଭବ

ହାଇସ୍କୁଲରେ ପଢ଼ାଉଥିବା ଜଣେ ବାୟୋଲଜି ଶିକ୍ଷକଙ୍କର ସ୍ୱପ୍ନ ଥିଲା ଯେ ସେ ବିଶ୍ୱବିଦ୍ୟାଳୟରେ ଫୁଟବଲ୍ କୋଚ୍ ହେବେ । ଅନେକ ଲୋକ ଏପରି ଏକ ସ୍ୱପ୍ନକୁ ଆଦୌ ଗୁରୁତ୍ୱ ଦେଉ ନଥିଲେ । କାରଣ ସେମାନଙ୍କ ଧାରଣାରେ ଏଇଟା ଥିଲା ଗୋଟେ ଛୋଟ କାମ, ମାତ୍ର ହାଇସ୍କୁଲ ଶିକ୍ଷକଙ୍କର ଏମିତି ଭାବିବା ପଛରେ ନିଶ୍ଚୟ କିଛି ଉଦ୍ଦେଶ୍ୟ ଥିଲା । ଦୌଡ ପ୍ରତିଯୋଗିତାରେ ଭାଗ ନେଉଥିବା ସବୁ ଖେଳାଳୀମାନଙ୍କୁ ସାହାଯ୍ୟ କରିବା ଥିଲା ତାଙ୍କର ଉଦ୍ଦେଶ୍ୟ ।

କାଳକ୍ରମେ ତାଙ୍କ ସ୍ୱପ୍ନ ଚରିତାର୍ଥ ହେଲା ଏବଂ ସିଏ ଜାତୀୟ ତଥା ଆନ୍ତର୍ଜାତିକ ସ୍ତରରେ ଜଣେ ସଫଳ କୋଚ୍ ଭାବେ ନିଜକୁ ପ୍ରତିଷ୍ଠିତ କରି ପାରିଲେ । ଯୁକ୍ତରାଷ୍ଟ୍ର ଆମେରିକାର ଅନେକ ଧାବକ ବିଶ୍ୱର ବିଭିନ୍ନ ଦୌଡ଼ ପ୍ରତିଯୋଗିତା ସହ ଅଲିମ୍ପିକ୍‌ରେ ବି ବିଜୟୀ ହେଇ ସ୍ୱର୍ଣ୍ଣପଦକ ପାଇଲେ ।

ଏତିକିରେ ତାଙ୍କ ମନ ଭରି ନଥିଲା । ଦୌଡ଼ ପ୍ରତିଯୋଗିତାରେ ଖେଳାଳୀମାନଙ୍କୁ ସୁବିଧା ଦେବା ପାଇଁ ସେ ସବୁବେଳେ ଚିନ୍ତିତ ଥିଲେ । ସେ ଚିନ୍ତା କଲେ ଯଦି ଧାବକମାନେ ପିନ୍ଧୁଥିବା ଜୋତାର ଓଜନରୁ ଏକ ଆଉନ୍‌ସ୍ କମାଇ ଦିଆଯାଏ, ତେବେ ଏକ ମାଇଲ୍ ରାସ୍ତା ଅତିକ୍ରମ କରୁଥିବା ଧାବକ ପାଇଁ ୨୦୦ ପାଉଣ୍ଡ ଓଜନ କମିଯିବ ।

ମାତ୍ର ତାଙ୍କର ଏତାଦୃଶ ଯୁକ୍ତିକୁ କିଣିବା ପାଇଁ କୌଣସି ଜୋତା ନିର୍ମାଣ କଂପାନୀ ପ୍ରସ୍ତୁତ ନଥିଲେ । ସେ ସମୟରେ ପ୍ରଚଳିତ ଥିବା ଜୋତାମାନଙ୍କ ସୋଲ୍‌ଠାରୁ ଯଥେଷ୍ଟ ହାଲ୍‌କା ସୋଲ୍ ଥିବା ଜୋତା ସେ ତିଆରି କଲେ । ମାତ୍ର ତାଙ୍କ ଆବିଷ୍କାରକୁ ବି କେହି ଗୁରୁତ୍ୱ ଦେଲେ ନାହିଁ । ମାତ୍ର ସେ ବିଚଳିତ ନ ହେଇ ବରଂ ନିଜେ ଜୋତା ତିଆରି କରିବା ଆରମ୍ଭ କଲେ ଓ ପରେ ପରେ ଏକ କାରଖାନା ବି ବସାଇଲେ ।

ସମୟାନୁକ୍ରମେ ଧାବକ ଫିଲ୍ ନାଇଟ୍‌ଙ୍କ ସହ ମିଶି ଏକ ଜୋତା କାରଖାନା ବସାଇଲେ ଯାହା ପରବର୍ତ୍ତୀ କାଳରେ ବିଶ୍ୱରେ ଏକ ମର୍ଯ୍ୟାଦା ଜନକ 'ନାଇକ୍' ଜୋତାର ମାନ୍ୟତା ପାଇଥିଲା । ବିଶ୍ୱର ଖେଳ ଇତିହାସରେ ତାଙ୍କର ଏ ପରାକାଷ୍ଠା ତାଙ୍କୁ ଦେଇଥିଲା ଯଶ ଓ ଅର୍ଥ । ସେ ହେଉଛନ୍ତି କିମ୍ବଦନ୍ତି ପୁରୁଷ ବିଲ୍ ବୋୟରମ୍ୟାନ୍ । ଜଣେ ବାୟୋଲଜି ଶିକ୍ଷକ ଭାବେ ସାରା ଜୀବନ ନ ବିତାଇ ଆଜି ବିଶ୍ୱବାସୀଙ୍କ ପାଖରେ ପ୍ରିୟ ହେବାର ଗୌରବ ସେ ଅର୍ଜନ କରିଛନ୍ତି । ଏସବୁ କେବଳ ସମ୍ଭବ ହେଇ ପାରିଲା ତାଙ୍କ ସ୍ୱପ୍ନ ଦେଖାରୁ ।

ସ୍ୱପ୍ନକୁ ସାକାର କରିଥିବା ଆଉ ଏକ ଘଟଣା ଏଠି ପ୍ରାସଂଗିକ ହେଇପାରେ । ପାକିସ୍ଥାନର ଅଖ୍ୟାତ୍ ଗାଁରେ ଭଦ୍ରବ୍ୟକ୍ତିଙ୍କର ଜନ୍ମସ୍ଥାନ । ଭାରତ ଓ ପାକିସ୍ଥାନ ବିଭାଜନ ପରେ ଭାରତକୁ ଚାଲି ଆସନ୍ତି ସେ ଏବଂ ଜୀବନ ଯାପନ ପାଇଁ ଜଣେ କାର୍ ମେକାନିକ୍ ଭାବେ କାମ ଆରମ୍ଭ କରନ୍ତି । ମାତ୍ର ତାଙ୍କର ସ୍ୱପ୍ନ ଥିଲା ସଂଗୀତ କ୍ଷେତ୍ରରେ ସେ ଦୁନିଆକୁ ଦେବେ ଅଜସ୍ର ଗୀତ ଆଉ ସଂଗୀତର ଉପହାର । ପରବର୍ତ୍ତୀ କାଳରେ ଜଣେ ବିଶିଷ୍ଟ ଗୀତିକାର ଭାବେ ବିଶ୍ୱର ସର୍ବୋଚ୍ଚ ସମ୍ମାନ 'ଓସ୍କାର, ଆୱାର୍ଡ' ପାଇବାରେ ସଫଳ ହୁଅନ୍ତି ସେ । ସେ ହିଁ ଗୁଲ୍‌ଜାର - 'ଜୟ ହୋ' ଓ ଅଜସ୍ର ସୁଲଳିତ ଗୀତର ପ୍ରଣେତା ।

କଳାର ବିଭିନ୍ନ ବିଭାଗରେ ତାଙ୍କ ସୃଜନର ସ୍ୱାକ୍ଷର ରହିଛି । ଚଳଚ୍ଚିତ୍ର ନିର୍ଦ୍ଦେଶନା, ପଟ୍ଟକଥା ଲେଖକ, କବିତା ଓ ଗଳ୍ପ ରଚନା ଏହାର ଉଦାହରଣ ।

ସ୍ୱପ୍ନ ତ ପ୍ରତି ମଣିଷ ଦେଖେ, ମାତ୍ର ତାକୁ ସାକାର କରିବା ପାଇଁ ଆବଶ୍ୟକ ଇଚ୍ଛାଶକ୍ତି, ଉଦ୍ୟମ ଏବଂ ଆନ୍ତରିକତା ସବୁରି ପାଖରେ ନଥାଏ । ସ୍ୱପ୍ନକୁ ସାକାର କରିଥିବା ଅନେକ ଉଦାହରଣ ଏଠି ଦିଆଯାଇ ପାରିବ । ମାତ୍ର ଗୁଲ୍‌ଜାରଙ୍କ କବିତା ପରିପ୍ରେକ୍ଷୀରେ ସେ ସବୁ ଏଠି ଅପ୍ରାସଂଗିକ ମନେ ହେବ ।

'ଗୁଲ୍‌ଜାର'ଙ୍କ କବିତା ସବୁ ଅନୁବାଦ କରିବା ବେଳେ ଯାହା ସବୁ ମୋ ନଜର୍‌କୁ ଆସିଛି ତାହା ପାଠକମାନଙ୍କ ପାଖରେ ଉପସ୍ଥାପିତ କରିବା ବରଂ ଅଧିକ ପ୍ରାସଙ୍ଗିକ ମନେ ହେବ । ସମ୍ଭବତଃ ଗୁଲ୍‌ଜାର୍‌ଙ୍କ କବିତାର ଏହା ହେଉଛି ପ୍ରଥମ ଓଡ଼ିଆ ଅନୁବାଦ ସଂକଳନ । ଲୋକପ୍ରିୟ ଚଳଚ୍ଚିତ୍ର ଗୀତିକାର ଭାବେ ସେ ଘରେ ଘରେ ଜଣାଶୁଣା ଦେଶରେ । ଜଣେ ଉଚ୍ଚକୋଟୀର ପ୍ରୟୋଗବାଦୀ ସ୍ରଷ୍ଟା ଭାବେ ତାଙ୍କୁ ମାନ୍ୟତା ଦିଆଯାଇଥାଏ । ଉର୍ଦ୍ଦୁ ଏବଂ ହିନ୍ଦୀ ଭାଷାରେ ସେ ଜଣେ ସଂବେଦନଶୀଳ କବି । ତାଙ୍କ କବିତାର ଅନୁଭବ ଦିଗ୍‌ବଳୟ ବେଶ୍ ବିସ୍ତୃତ । ପ୍ରାୟ ଅଧିକାଂଶ କବିତାରେ ହିନ୍ଦୀ ଓ ଉର୍ଦ୍ଦୁ ଶବ୍ଦର ରହିଛି ଅପୂର୍ବ ସହାବସ୍ଥାନ ।

ଶୈଶବର ସ୍ମୃତି ଓ ଦେଶ ବିଭାଜନର ଦୁଃଖ ତାଙ୍କ କବିତାର ବିଶିଷ୍ଟ ଅଙ୍ଗ ଯାହା ପାଠକର ହୃଦୟରେ ଭରିଦିଏ ଅଦ୍ଭୁତ ଯନ୍ତ୍ରଣା ଓ ନିରୀହପଣ । ପାକିସ୍ଥାନର 'ଦୀନା'ରେ ତାଙ୍କର ଜନ୍ମ । ଭାରତ ଓ ମୁମ୍ବଇ ତାଙ୍କ କର୍ମଭୂମି । ବିଭାଜନ ଓ ବିସ୍ଥାପନର ସ୍ମୃତି ତାଙ୍କ କବିତାରେ ଯେପରି ରୂପ ନେଇଛି ତା'ର ଉଦାହରଣ ଏଠି ଦିଆ ଯାଇପାରେ ।

ଜିକ୍ର ଜେହଲମ୍ କା ହୈ, ବାତ ହୈ ଦୀନେ କୀ
ଚାନ୍ଦଁ ପୁଖରାଜ କା, ରାତ ପଶ୍ମୀନେ କୀ

..............................................................................

ଏକ ସନ୍ନାଟା ଦବେ ପାଓଁ ଗୟା ହୋ ଜୈସେ
ଦିଲ୍ ସେ ଏକ ଖୌଫ୍-ସା ଗୁଜରା ହୈ
ବିଛଡ଼୍ ଜାନେ କା

..................................................................................

ରାଖ କୋ ଭି କୁରେଦ୍ କର ଦେଖୋ
ଅବ୍ ଭି ଜଲତା ହୋ କୋଇ ପଲ ଶାୟଦ

..................................................................................

ସହରା କେ ଉସ୍ ତରଫ ସେ ଗୟେ ସାରେ କାରୱାଁ
ସୁନ୍-ସୁନ୍ କେ ହମ୍ ତୋ ସିର୍ଫ ସଦା-ଏ-ଜରସ ଜିୟେ

ବିଷୟ ନିର୍ବାଚନରେ ସେ ଖୁବ୍ ସୁଦୂର-ପ୍ରସାରୀ ଓ ବିମ୍ବ ବିଧାନରେ ନିଜର ସ୍ୱକୀୟତା ପ୍ରତିପାଦିତ କରିଛନ୍ତି । ସାଧାରଣ ତଥା ଦୈନନ୍ଦିନ ଘର କରଣା ଓ ଆଖପାଖର ବସ୍ତୁକୁ ସେ ଖୁବ୍ ସୁନ୍ଦର ଭାବେ ଆପଣେଇ ନିଜ କବିତାର ସଂସାର ଗଢ଼ିଛନ୍ତି । ତା'ଭିତରୁ କେତୋଟି ହେଲା : ଓସ୍ତଗଛ, ଜହ୍ନ, ରୁଟି, ତାୱା, ଚୁଲି, ଧୂଆଁ, ସବୁଜ ପତ୍ର, ଟଙ୍କା, ଗଳି, ଜାମୁକୋଳି, ଖବରକାଗଜ, ପକ୍ଷୀ, ପାଣିବୁନ୍ଦା, ମେଘ ଓ ଘରର କବାଟ । ତାଙ୍କ କବିତାରେ ଥିବା ସମକାଳୀନତା ପରବର୍ତ୍ତୀ ସମୟରେ ସର୍ବକାଳୀନତାକୁ ଉତ୍ତରଣ ହେଇଥାଏ ଅନାୟାସରେ ।

ହିନ୍ଦୀ ଆଉ ଉର୍ଦ୍ଦୁ ସାହିତ୍ୟର ସଂଗମ ଭୂମିରେ ଠିଆ ହେଇଛନ୍ତି ଗୁଲ୍‌ଜାର୍‌ଙ୍କ କବିତା । ତାଙ୍କ କବିତାର ସ୍ୱର ଅନ୍ୟ ସମକାଳର କବି ଯଥା ତ୍ରିଲୋଚନ ଶାସ୍ତ୍ରୀ, ସର୍ବେଶ୍ୱର ଦୟାଲ ସାକ୍‌ସେନା, କେଦାରନାଥ ସିଂ, ନାଗାର୍ଜୁନ ଓ କେଦାରନାଥ ଅଗ୍ରୱାଲଙ୍କ କବିତାର ସ୍ୱର ସହ ବେଶ୍ ତାଳ ଦେଇ ଚାଲିଛି । ଯାହାର ଉଦାହରଣ ହେଉଛି-

ଓକ୍ତ କୀ ହଥେଲୀ ପର ବହତା
ଆଦମୀ ବୁଲବୁଲା ହୈ ପାନୀ କା

..................................................................................

ଝୁମ କେ ଫିର୍ ଉଠେ ହୈ ବାଦଲ
ଟୁଟ୍‌କେ ଫିର୍ ମେଁହ ବରସେଗା

..................................................................................

ଛୋଟେ ଥେ ମାଁ ଉପଲେ ଥାପା କରତୀ ଥି
ହମ୍ ଉପଲୋଁ ପର ଶକ୍ଲେଁ ଗୁନ୍ଧା କରତେ ଥେ

..................................................................................

ରାତ୍ ଭର୍ ସର୍ଦ ହୱା ଚଲତୀ ରହୀ
ରାତ୍‌ଭର୍ ବୁଝତେ ହୁଏ ରିସ୍ତେକୋ ତାପା ହମ୍‌ନେ

..................................................................................

ସୁବହ-ସୁବହ ଏକ ଖ୍ୱାବ୍ କୀ ଦସ୍ତକ ପର
ଦରୱାଜା ଖୋଲା ଦେଖା

ସରହଦ କେ ଉସ୍ ପାର ସେ କୁଛ
ମେହମାନ ଆୟେ ହେଁ...
ସରହଦ ପର କଲ୍ ରାତ୍, ସୁନା ହୈ,
ଚଲି ଥୀ ଗୋଲି
ସରହଦ ପର କଲ ରାତ୍, ସୁନା ହୈ
କୁଛ୍ ଖ୍ୱାବୋଁ କା ଖୁନ୍ ହୁଆ ଥା

ଗୁଲ୍‌ଜାର୍‌ଙ୍କ କବିତାରେ ସୃଷ୍ଟି ହେଇଥିବା ବିମ୍ବ ହିଁ ସେ ନେଇଥାନ୍ତି ଘରକରଣା ତଥା ଦୀନଚର୍ଯ୍ୟା ଭିତରୁ ଯାହା ତାଙ୍କ କବିତାକୁ ଏକ ପ୍ରକାର ନଷ୍ଟଲଜିଆ କବିତାରେ ଚିହ୍ନିତ କରିଥାଏ । ଏହାଛଡ଼ା ଆଉ କେତେକ ବିମ୍ବ ତାଙ୍କ କାବ୍ୟିକ ଓ ସୁଫିୟାନା ମନୋଭାବର ପରିଚୟ ବି ଦେଇଥାଏ । କେବେ ତାଙ୍କ କବିତା ଗାଲିବ୍‌ଙ୍କ ଗଳି ଭିତରେ ଏଣେତେଣେ ବୁଲୁଥାଏ, ପୁଣି କେବେ ବନାରସର ଘାଟ ପାଖରେ କବୀର ପନ୍ଥୀଙ୍କ ଓଢଣୀ ଘୋଡ଼ି ହେଇଥାଏ, ପୁଣି କେବେ ସୁଫି କବିମାନଙ୍କ ଗହଣରେ ବସି ଜୀବନର ମିଳନ ଓ ବିଚ୍ଛେଦ ଗାଥା ଗାଉଥାଏ । ଏଇ ସୁଫି ଅନ୍ଦାଜ୍‌କୁ ଗୁଲ୍‌ଜାର୍ କିପରି ତୋଳି ଧରିଛନ୍ତି ଶବ୍ଦରେ ତା'ର କେଇଟି ଉଦାହରଣ ଏଠି ପେଶ୍ କରୁଛି:

ଜୀନ୍ଦେଗୀ କିସ କଦର ଆସାଁ ହୋତୀ
ରିସ୍ତେ ଗର ହୋତେ ଲିବାସ-
ଔର୍ ବଦଲ ଲେତେ କମିଜୋଁ କୀ ତରହ

......................................................................

ଅପନେ ହୀ ସାଁସୋଁ କା କୈଦୀ
ରେଶମ କା ୟହ ଶାୟର ଇକ୍ ଦିନ
ଅପନେ ହୀ ତାଗୋଁ ମେଁ
ଘୁଟକର ମର ଜାଏଗା

......................................................................

ଗୌର ସେ ଦେଖ୍‌ନା ବହାରୋଁ ମେଁ
ପିଛଲେ ମୌସମ କେ ଭି ନିଶାଁ ହୋଁତେ
କୋଁପଲୋଁ କୀ ଉଦାସ ଆଁଖୋଁ ମେଁ
ଆଁସୁଓଁ କୀ ନମୀ ବଚୀ ହୋଗୀ

......................................................................

କାଁଚ କେ ଖ୍ୱାବ ହୈ ବିଖରେ ହୁଏ
ତନହାଇ ମେଁ

ଖ୍ୱାବ ଟୁଟେ ନା କୋଇ, ଜାଗ ନ ଜାୟେ ଦେଖୋ
ଜାଗ ଜାୟେଗା କୋଇ ଖ୍ୱାବ୍ ତୋ ମର୍ ଜାୟେଗା

ସୁଫିୟାନା ଅନ୍ଦାଜ ସହ କବିର ଜୀବନ ଦର୍ଶନ ବ୍ୟକ୍ତ କରିବାକୁ ଯାଇ ଗୁଲ୍‌ଜାର ଉପରୋକ୍ତ କବିତାମାନଙ୍କରେ ଜୀବନର ଗଭୀରତମ ଭାବଭୂମି ସୃଷ୍ଟି କରିଛନ୍ତି, ଯାହା ଜୀବନର ଅସଲ ସତ୍ୟକୁ ଖୋଜିବାର ପ୍ରୟାସ କରିଛି ଅନବରତ । ସେଇଥିପାଇଁ ତାଙ୍କ କବିତାରେ ରହିଛି ବିରୋଧାଭାସର ଅନୁଗୁମ୍ଫନ- ପ୍ରେମରେ ବିରହ, ଜୀବନରେ ବୈରାଗ୍ୟ, ସଂପର୍କରେ ଶିଥିଳତା । ଏ କଥା କେବଳ ତାଙ୍କ କବିତାରେ ଦେଖିବାକୁ ମିଳେନା, ବରଂ ସେ ଲେଖିଥିବା ଅଗଣିତ ମାର୍ମିକ ଚଳଚ୍ଚିତ୍ର ଗୀତମାନଙ୍କରେ ବି ଝରି ଆସିଛନ୍ତି ଆପେ ଆପେ, ଯେମିତି :

କହନେ ବାଲୋଁ କା କୁଛ ନହିଁ ଜାତା
ସହନେ ବାଲେ କମାଲ କର୍‌ତେ ହୈ
କୌନ ଢୁଁଢେ ଜବାବ୍ ଦର୍ଦୋଁ କେ
ଲୋଗ ତୋ ବସ ସବାଲ କରତେ ହୈଁ

(ଫିଲ୍ମ : ଥୋଡ଼ିସି ବେବଫାଇ)

ଏକ ଅକେଲା ଇସ ଶହର ମେଁ....
ଜୀନେକୀ ବଜହ ତୋ କୋଇ ନହିଁ
ମରନେ କା ବହାନା ଢୁଁଢତା ହୈ

(ଫିଲ୍ମ : ଘରୋଁ ଦା)

ଗୁଲ୍‌ଜାର୍‌ଙ୍କ କବିତା, ଗୀତ ଓ ଗଜଲରେ 'ଜହ୍ନ'ର ଚିତ୍ରଣ ପ୍ରାୟତଃ ଦେଖିବାକୁ ମିଳିଥାଏ । ଏକ ମୋଟିଫ୍ ଭାବେ ସେ ଜହ୍ନକୁ ନେଇଛନ୍ତି ତାଙ୍କ ରଚନାରେ । ଏହାର ଅନେକ ଦୃଷ୍ଟାନ୍ତ ଦିଆଯାଇ ପାରିବ, ମାତ୍ର ଏଠି ସ୍ପଷ୍ଟ କରିବା ସର୍ବାଦୌ ପ୍ରାସଂଗିକ ହେବ ଯେ ଏହା ଗୁଲ୍‌ଜାରଙ୍କ କବିତାର ସମାଲୋଚନାତ୍ମକ ସମୀକ୍ଷା ନୁହେଁ, ବରଂ କବିତାମାନଙ୍କୁ ପାଠକମାନଙ୍କ ପାଇଁ ଅନୁବାଦ କଲାବେଳେ ଯେଉଁସବୁ ଅନୁଭବ ମନ ଭିତରକୁ ଆସିଛନ୍ତି, ତାକୁ ଅନ୍ୟମାନଙ୍କୁ ମାତ୍ର ବାଣ୍ଟିବା କାମଟି ହିଁ କରିଛି ।

ଗୋଟିଏ ଭାଷାର କବିତାକୁ ଅନ୍ୟ ଗୋଟିଏ ଭାଷାରେ ଅନୁବାଦ କଲାବେଳେ ଅନୁବାଦକଙ୍କୁ ଯେଉଁସବୁ ବିଫଳତା ଓ ବିଡ଼ମ୍ବନା ଭୋଗିବାକୁ ପଡ଼ିଥାଏ, ସେ ସବୁରୁ ମୋତେ ବି ନିସ୍ତାର ମିଳିନାହିଁ । ସବୁ ଶବ୍ଦର ଏକ ନିଜସ୍ୱ ଛାଇ ଅଛି । ଗୋଟିଏ ଭାଷାରୁ ଅନ୍ୟ ଭାଷାକୁ କାୟାନ୍ତରଣ ହେଲାବେଳେ ସାଥିରେ ସେ ଛାଇଟି ଯାଇ ପାରେନା । ତେଣୁ ମୂଳ ଭାଷାରେ ଥିବା କୋମଳତା, ସାଂଗୀତିକତା ତଥା ଛାଇ ପରସିପାରୁଥିବା ଶିତଳତାକୁ ଅନୁବାଦକ

କେତେଦୂର ବଜାୟ ରଖିପାରିବ ତାହା ହିଁ ସଫଳତାର ଚାବିକାଠି ତା' ପାଇଁ ।

ମନେ ପଡୁଛି, ବେକ୍‌ଫୋର୍ଡଙ୍କ ବହିକୁ ଅନୁବାଦ କରିବା ପରିପ୍ରେକ୍ଷୀରେ ଆର୍ଜେଣ୍ଟିନାର ମହାକବି ବୋର୍ଖେସ୍ ମନ୍ତବ୍ୟ ଦେଇଥିଲେ-

-The Original is unfaithful to translation. ଏ କଥା ପ୍ରକାନ୍ତରେ କବି ରବର୍ଟ ଫ୍ରଷ୍ଟ ବି ସ୍ୱୀକାର କରି ସାରିଛନ୍ତି :Poetry is what gets lost in translation' ।

ଏସବୁ ସତ୍ତ୍ୱେ, ଅନୁବାଦ ହିଁ ଏକମାତ୍ର ଉପାୟ ନିଜ ଭାଷା ଓ ସାହିତ୍ୟର ଦିଗ୍‌ବଳୟକୁ ସଂପ୍ରସାରିତ କରିବା ଲାଗି । ପ୍ରାୟ ଦୁଇବର୍ଷ ତଳେ ଗୁଲ୍‌ଜାର୍‌ଙ୍କ ପାଖରୁ ନିଆଯାଇଥିବା ଏକ ବାର୍ତ୍ତାଳାପ ବି ଏଠି ସ୍ଥାନିତ ହେଇଛି । ଗୁଲ୍‌ଜାର୍‌ଙ୍କ କବିତା, ଜୀବନାଦର୍ଶକୁ ବୁଝିବା ଲାଗି ଏହା ଏକ ପ୍ରୟାସ ମାତ୍ର ।

ଆଶା, ବିଜ୍ଞ ପାଠକେ ଏହାକୁ ସହୃଦୟ ଗ୍ରହଣ କରିବେ ।

**- ମନୁ ଦାଶ**



Savita 09

# ପ୍ରେମ ଏକ ଜଳନ୍ତା ଚୁରୁଟ୍...

**It's like a cigar. If it goes out, you can light it again, but it never tastes quite the same.**

***Lord Wavell*** (1883-1950)
British field marshall

# ମଧୁଚନ୍ଦ୍ରିକା

କାଲି ତୁମକୁ ବୁଲେଇ ନେବି
ସମୁଦ୍ର କଡ଼େ କଡ଼େ ଥିବା
ବୃତ୍ତାକାର ସଡ଼କ ଆଡ଼େ
ରାତିରେ ଲାଗେ ଯିମିତି
ଗଳାରେ ହାର ପିନ୍ଧିଛି ସମୁଦ୍ର !

ବହୁତ ଦୂର ଯାଏ
ଆମେ ବୁଲିବା ଘୋଡ଼ା ଗାଡ଼ିରେ
କିଛି ସମୟ ପାଇଁ ଅନ୍ତତଃ
ନିଜକୁ ସମ୍ରାଟ ବୋଲି ଭାବିବା ଆମେ
ଘୋଡ଼ାଇ ଟପ୍ ଟପ୍ ଖୁରାଘାତରେ

'ତାଜମହଲ ହୋଟେଲ' ଦେଖିବା ଆମେ
'ଗେଟ୍‌ୱେ ଅଫ୍ ଇଣ୍ଡିଆ' ପାଖରୁ
ଯେଉଁଠି ରୁହନ୍ତି
ବିଲାତରୁ ଆସିଥିବା ଦମ୍ପତି
ମଧୁଚନ୍ଦ୍ରିକା ପାଇଁ !

ଆଜି ରାତିରେ ଆମେ
ଫୁଟପାଥ୍ ଉପରେ ଇଟା ରଖି
ଇରାନୀ ହୋଟେଲରୁ ଆଣିଥିବା
ବିରିୟାନୀ ଗରମ କରିବା
ଆଉ ଏଇ ଘରର ସିଡ଼ି ତଳେ
ପାଳିବା ଆମର ମଧୁଚନ୍ଦ୍ରିକା !

## ମହୁଫେଣା

ଏମିତି ଲଢ଼ିଲି ସାରା ରାତି
ସତେ ଯିମିତି ମୋର ଶତ୍ରୁ ସିଏ !

ଅଗ୍ନି ଶିଖାରେ ଜଳେଇଲି
ପୁଣି କେବେ ବିନ୍ଧ କଲି ତୀର
ସାରା ଦେହରେ ଦେଖିଲି
ନଖର ରାମ୍ପୁଡ଼ା ଦାଗ
ଆଉ ଛାତିରେ ଥିଲା
ଦାନ୍ତ କାମୁଡ଼ାର ଚିହ୍ନ ମୋର
ଏମିତି ଲଢ଼ିଲି ସାରା ରାତି
ସତେ ଯିମିତି ମୋର ଶତ୍ରୁ ସିଏ !

ସକାଳେ ଶୁଣା ଯାଉ ନଥିଲା ଘରେ
ଗୁଣୁ ଗୁଣୁ ସ୍ୱର ତା'ର
ପିଲାମାନଙ୍କୁ ଘେରି ବସିଥିଲା ସିଏ
ମମତାରେ ଜଡ଼ସଡ଼
ମହୁଫେଣାଟିଏ ନେଇ !

## ଦେହ

ଆକାଶରେ ଭାସୁଥାଏ
ଥଣ୍ଡା ମେଘମାଳାଙ୍କ ଦ୍ୱୀପ ସବୁ

ଲୋହିତ ଦିଗ୍‌ବଳୟର ନିଆଁ
ତରଳି ଯାଏ ଝରଣା ହେଇ
ସମୟ ବଢ଼ିଯାଏ ଆପେ ଆପେ

ତୁମ ବାହୁବନ୍ଧନରେ ଡୁବି
ମୁଁ ଭାସୁଥାଏ ନିର୍ବିଘ୍ନରେ
ଲାଗୁଥାଏ ଦେହରୁ ମୋର
ଶହେଟି ଦେହ ବାହାରି ଗଲେଣି

ଏବେ ମୁଁ ଦେହର ବୋଝରୁ
ପାଇ ସାରିଲିଣି ମୁକ୍ତି ।

## ପତ୍ରଝରା

ଯେବେ ଯେବେ
ଗଛର ହଳଦିଆ ପତ୍ର ସବୁ
ଝରିଝରି ଆସି
ପଡ଼ନ୍ତି ମୋ ବଗିଚାରେ
ରାତିରେ ମୁଁ ଛାତ ଉପରେ
ଚାହୁଁଥାଏ ଆକାଶକୁ
ବାରମ୍ବାର,
ଲାଗେ ଯିମିତି
ହଳଦିଆ ପତ୍ର ପରି ଦୁର୍ବଳ ଜହ୍ନ
ଓହ୍ଲେଇବ ଏଇନେ ମୋ ବଗିଚାରେ
ଓସ୍ତ ପତ୍ର ପରି ପହଁରି ପହଁରି ।

## ସୁଇମିଙ୍ଗ୍ ପୁଲ୍

କାଲି ରାତିରେ ଭୀଷଣ ଗରମ
ଆଖି ଖୋଲିଗଲା ପରେ ଅଚାନକ
ମନ ହେଉଥିଲା
ସୁଇମିଙ୍ଗ୍ ପୁଲ୍‌ର ଥଣ୍ଡା ପାଣିରେ
ଅନ୍ତତଃ ଥରେ ବୁଡ଼ ମାରି ଆସିବାକୁ ।

ବାହାରେ ଆସି
ସୁଇମିଙ୍ଗ୍ ପୁଲ୍‌ରେ ତାକୁ ଦେଖି
ଆଚମ୍ବିତ ହେଲି,
ଜାଣେନା କେବେଠୁଁ
ନ ପଚାରି ମୋତେ
ସୁଇମିଙ୍ଗ୍ ପୁଲ୍‌ରେ ମୋର
ଜହ୍ନଟିଏ ଆସି ଯାଇଥିଲା,
ପଡ଼ି ରହିଥିଲା ଆଖି ବନ୍ଦ୍ କରି,
ଆଉ ପହଁରୁଥିଲା
ଓଃ, କାଲି ରାତିରେ ଭୀଷଣ ଗରମ ଥିଲା !

# ଧ୍ୱନି

ସାରାରାତି ବହୁଥିଲା ହେମାଳ ପବନ
ଆଉ ସାରାରାତି ଆମେ ନିଆଁ ପୋଉଁଥିଲୁ
ଧ୍ୱନି ଆଗରେ

ଅତୀତର କିଛି ମଳା ଶାଖା ପ୍ରଶାଖାଙ୍କୁ

ମୁଁ କାଟିଲି
ବିତି ଯାଇଥିବା ମୁହୂର୍ତ୍ତମାନଙ୍କ ପତ୍ରକୁ
ତୁମେ ଛିଣ୍ଡେଇଲ
ପକେଟରେ ଭର୍ତ୍ତି ହେଇଯାଇଥିବା
ନିର୍ଜୀବ କବିତାଙ୍କୁ
ମୁଁ କାଢ଼ି ସଫା କଲି
ତୁମେ ବି ନିଜେ ଖୋଲିଲ
ଝାଉଁଳି ପଡ଼ିଥିବା ଚିଠି ସବୁକୁ

କେତେ ସବୁ ସୂତାକୁ ଛିଣ୍ଡେଇଲି ନିଜ ଆଖିରେ
ପାପୁଲିରୁ ଫିଙ୍ଗି ଦେଲି
ବାସି ହେଇ ଯାଇଥିବା ପଂକ୍ତିମାନଙ୍କୁ
ଶୁଖି ଯାଇଥିବା ଆଖିର ଆର୍ଦ୍ରତାକୁ
ଝାଡ଼ି ସଫା କରି ଦେଲ ତୁମେ
ଯାହା ସବୁ ଗଜୁରୁ ଥିଲା ଆମ ଦେହରେ ସାରାରାତି
କାଟିକୁଟି ସେ ସବୁକୁ
ଫିଙ୍ଗି ଦେଲୁ ଆମେ ଜଳୁଥିବା ଧୁନି ଉପରକୁ

ସାରାରାତି ଅଗ୍ନିଶିଖାକୁ
ଜଳେଇ ରଖିଥିଲା ଆମ ନିଃଶ୍ୱାସ ପ୍ରଶ୍ୱାସ
ଏବଂ ଜଳେଇ ରଖିଥିଲା
ଦୁଇ ଶରୀରର ଇନ୍ଧନକୁ,
ସାରା ରାତି ଆମେ ଜଳେଇ ରଖିଥିଲେ
ଲିଭି ଆସିଥିବା ଆମ ସମ୍ପର୍କକୁ ।

## ଦୂରତା

ଏବେ ବି ରହି ଯାଇଛି ତକିଆରେ
ତୁମ ମଥାର ଗହିରିଆ ଦାଗଟେ
ଏବେ ବି ଲାଖି ରହିଛି ଶୋଇବା ଚାଦରରେ
ତୁମ ଦେହର ଓଦା ଓଦା ବାସ୍ନା

ହାତ ପାପୁଲିରେ ମୋର ନେସି ହେଇ ଯାଇଛି
ତୁମ ମୁହଁର ବାସ୍ନା
ଆଉ କପାଳରେ ମୋର ଲାଖି ରହିଛି
ତୁମ ଓଠର ଚିହ୍ନ

ଏତେ ପାଖକୁ ଜାକି ହେଇ ଯାଇଛ ଯେ
ଦେଖି ହେଉନି ଆଦୌ ତୁମକୁ
ଟିକିଏ ଦୂରକୁ ଘୁଞ୍ଚି ଯାଅ ଯେ
ଅନ୍ତତଃ ଦେଖି ନେବି ମୁଁ
ତୁମ ଚେହେରା ।

# ଝିପି ଝିପି ବର୍ଷା

ବନ୍ଦ କାଚର ବାହାରକୁ ଦେଖ,
ଛାତର ଆଗକୁ
ସବୁଜ ବୃକ୍ଷ, ଗହଳ ଶାଖା ପ୍ରଶାଖା ଓ ଫୁଲଙ୍କୁ
କିମିତି  ନୀରବରେ
ବର୍ଷା ଚାଲିଛି, ଅବିରାମ ।

ଅନେକ ସ୍ୱର, ଅନେକ ଲୋକ ଓ
ଅନେକ ଗହଳି ଭିତରେ
ଭାବନାର ନିଭୃତ କୋଣରେ
ଆଉ ଏକ ଇଲାକାରେ
ମୁଁ ଭାବୁଛି
ବର୍ଷା ଭଳି ତୁମେ
ଝରି ଯାଉଛ ଚୁପ୍‌ଚାପ୍ ।



# କିଛି ଲୁହ କିଛି ନୀରବତା...

If I should meet thee
After long years,
How should I greet thee ?-
With silence and tears.

***Lord Byron*** (1788-1824)
British poet *(When we two parted)*

# ହୃଦୟ ଖୋଜୁଥାଏ

ପୁଣିଥରେ ସେଇ ସୁଖଦ ମୁହୂର୍ତ୍ତମାନଙ୍କୁ
ହୃଦୟ ଖୋଜୁଥାଏ,
ଦିନରାତି ଆମେ ଯେବେ
ଭାବି ବସୁ ପ୍ରିୟତମାର କଥା
- ଗାଲିବ

'ପୁଣିଥରେ ସେଇ ସୁଖଦ ମୁହୂର୍ତ୍ତମାନଙ୍କୁ
ହୃଦୟ ଖୋଜୁଥାଏ ଦିନରାତି'

ଶୀତ ଦିନର ନରମ ଖରାରେ
ଅଗଣାରେ ପଡ଼ି ରହି,
ତୁମ ପଣତର ଛାଇକୁ
ଟାଣି ଆଣି ଆକ୍ଷି ଉପରକୁ
କେବେ ମୁହଁ ମାଡ଼ି
ପୁଣି କେବେ କଡ଼ ଲେଉଟାଇ

ଅବା, ଗ୍ରୀଷ୍ମ ରାତିରେ
ଯେତେ ପବନ ବହୁଥାଏ ପୂର୍ବଦିଗରୁ,
ଶୀତଳ ତଥା ଧଳା ଚାଦର ଉପରେ
ଚେଇଁ ପଡ଼ିଥାଏ ବହୁ ବେଳ ଯାଏ
ଶୋଇ ରହି ଛାତ ଉପରେ
ଦେଖୁଥାଏ ତାରାମାନଙ୍କୁ

କେବେ ପୁଣି
ବରଫର ଶୀତଳ ରାତିରେ
ଜାକିଜୁକି ହେଇ ବସେ
ପୁଣିଥରେ ପାହାଡ଼ କଡ଼ରେ,
ଚୁପ୍‌ଚାପ୍ ଶୁଣେ ଉପତ୍ୟକାରେ
ପ୍ରତିଧ୍ୱନି କରୁଥିବା ନୀରବତାକୁ ।

'ପୁଣି ଥରେ ସେଇ ସୁଖଦ ମୁହୂର୍ତ୍ତମାନଙ୍କୁ
ହୃଦୟ ଖୋଜୁଥାଏ ଦିନରାତି'

# ପୋଷାକ

ମୋ ପୋଷାକ ପାଖରେ
ଝୁଲୁଛି ତୁମ ରଙ୍ଗ ବେରଙ୍ଗୀ ପୋଷାକ
ଯାହାକୁ ମୁଁ ସବୁବେଳେ
ସଫା କରେ ଘରେ
ଏବଂ ଶୁଖିଗଲା ପରେ
ସେ ସବୁକୁ ନିଜେ ଇସ୍ତ୍ରୀ କରେ,
ହେଲେ କେବେ ବି ହଟାଇ ପାରେନା
ତା'ର ଲୋଚାକୋଚାକୁ
ନା ଧୋଇକି ଲିଭାଇ ପାରେନା
ପୁରୁଣା ଅଭିଯୋଗର ଦାଗ ସବୁକୁ

ସତରେ, ଜୀବନ କେତେ ସହଜ
ହେଇ ପାରନ୍ତା
ଯଦି ସମ୍ପର୍କ ସବୁ ପାଲଟି ଯାଇଥାନ୍ତେ
ହଳେ ହଳେ ପୋଷାକ
ଆଉ ଆମେ ନିଜ ଇଚ୍ଛାରେ ତାକୁ
ସାର୍ଟ ପରି ବଦଳାଇ ପାରୁଥାନ୍ତେ !

## ନାନାବାୟା

ଯେବେ ସୁନେଲି ଫ୍ଲାମିଙ୍ଗୋ ପକ୍ଷୀମାନେ
ବସିଯା'ନ୍ତି ଦିଗ୍‌ବଳୟର ଶାଖା ପ୍ରଶାଖାରେ

ସନ୍ଧ୍ୟା ଯେବେ ନଇଁଯାଏ ତୁମ କାନ୍ଧ ଉପରେ
ଦୀପ ସବୁ ଯେବେ ଖୋଲନ୍ତି ତାଙ୍କ ଉଦାସ ଆକ୍ଷି
ନିଜ ମୁହଁରେ ତୁମେ ଟାଣିଦିଅ ଲଜ୍ଜାର ଓଢ଼ଣା

ଧୀରେ ଧୀରେ ଫୁସୁଲେଇ
ଓଢ଼ଣା ତୁମର ଟାଣିଦେବି ମୁଁ
ତୁମ ଓଠର ଶୀତଳ ଗୋଲାପକୁ
ସାଇତି ରଖିବି ମୋ ଆକ୍ଷିପତାରେ
ନିଦ ଲାଗିବା ବେଳର ସେଇ ଗପ ସବୁ
ପୁଣିଥରେ ଶୁଣେଇବି ରାତିକୁ
ଯେଉଁ ନିଦ ମିଳିଥିଲା ମୋତେ
ଉଜାଗର ବେଳେ ତୁମ କୋଳର ଶାନ୍ତିରେ ।

## ଚିତ୍ରାଙ୍କନ

ମନେ ଅଛି
ମୋ ଟେବୁଲ ପାଖରେ ବସି ବସି
ସିଗାରେଟ୍ ଖୋଳରେ ତୁମେ
ଆଙ୍କି ଦେଇଥିଲ
ଛୋଟ ଚାରାଟିଏ ।

ଏବେ ଆସି ଦେଖ
ସେ ଗଛରେ ଏବେ
ଫୁଲ ଫୁଟିଲାଣି ।

## ବୁଣାକାର

ହେ ବୁଣାକାର ବନ୍ଧୁ,
ମୋତେ ବି ବୁଣିବା ବାଗ ବତେଇ ଦିଅ

ତୁମକୁ ଦେଖିଛି ମୁଁ ଅହରହ
ସୂତାରେ ବୁଣିବା ବେଳେ ଲୁଗା,
ଆଉ ଯେବେ ଛିଣ୍ଡି ଯାଇଛି ସୂତା
ସୂତାରେ ସୂତାକୁ ଯୋଡ଼ି
ଏମିତି ବୁଣି ଦେଇଛ ଯେ
କାହାରି ଆଖିରେ ସହଜେ ପଡ଼େନା
ସେ ଲୁଗାର ଗଣ୍ଠି ।

ଅଥଚ ଥରୁଟିଏ ସମ୍ପର୍କର ଖିଅ ବୁଣିଥିଲି ମୁଁ
ଯାହାର ସବୁ ଗଣ୍ଠିତକ
ଜଳ ଜଳ ଦେଖାଯାଉଛି
ହେ ବୁଣାକାର ବନ୍ଧୁ !

# ଦୀନା*ରେ

ବଢ଼ିଲା ଝିଅଟେ ଥିଲା ସେ –
ବସ୍ତାନୀ ଧରି ମୋର
ଟାଣି ନେଇଥିଲା ମୋତେ
ଘରର ଦରଜା ପଛକୁ
ଚୋରେଇ ନେଇଥିଲା ବସ୍ତାନୀରୁ ମୋର
'ଗାଚନୀ' ମାଟି

ଓଠ କାମୁଡ଼ି ହସୁଥିଲା ସେ
ଚୁମାଟେ ମୋ ଗାଲରେ ଆଙ୍କି
ଫୁସୁଲେଇ ଥିଲା,
"ମୋତେ ଦେଇ ଦେ' ଏ ମାଟି,
କାନ୍ଥରେ ଲିପି ଗୋଟେ ନାଆଁ
ଲେଖିବାକୁ ଅଛି ମୋତେ ।"

"ସେ ଗୋଟେ ପାଗଳୀ ହେଇଥିବ ନିଶ୍ଚୟ"
– କହିଥିଲା ମୋତେ ମା'
ଛଅ ବର୍ଷର ଥିଲି ମୁଁ ସେବେ
ଏବେ ମୋତେ ଛପନ ବର୍ଷ
ଏବେ ବି ଭାବି ଭାବି 'ତା' କଥା
ପାଗଳ ହେଇ ଯାଉଛି ମୁଁ
ଏବେ ବି ମୋର ମନେ ପଡ଼ିଯାଏ
ସେଇ ବଢ଼ିଲା ଝିଅଟା କଥା ।

*(* ଗୁଲଜାରଙ୍କ ଜନ୍ମସ୍ଥାନ 'ଦୀନା' ଏବେ ପାକିସ୍ଥାନରେ)*

## ଏମିତି ବିଛେଇ ଯାଇଛି ଦିନରାତି, ଯେମିତି...

ଏମିତି ବିଛେଇ ଯାଇଛି ଦିନରାତି, ଯେମିତି
ଛିଣ୍ଡି ଯାଇଛି ମୋତିର ହାରଟିଏ

ଯାହା ତୁମେ ଗୁନ୍ଥି ରଖିଥିଲ ମୋ ପାଇଁ ।

## ତୁମ ସହରରେ ପହଞ୍ଚିଯା'ନ୍ତି ଯେ

ତୁମ ସହରରେ ପହଞ୍ଚିଯା'ନ୍ତି ଯେ
ହେଲେ ବାଟରେ ପାଣିର ସମୁଦ୍ର...
ଆଉ ସବୁ ପୋଲମାନଙ୍କୁ
ଜଳେଇ ଦେଇଥିଲ ତୁମେ ।

## ହୃଦୟ ଦେଖିଛ କେବେ ?

ହୃଦୟ ଦେଖିଛ କେବେ
ଅନୁଭବ କରିଛ କି ?
ଅନୁଭବ କରିଛ କେବେ
ଧଳା ରଙ୍ଗର ସତେଜ ତଥା ସଜାଗ କୁହୁଡ଼ିକୁ ?

ଅନୁଭବ କରିଛ କି
ନିଃଶ୍ୱାସ ପ୍ରଶ୍ୱାସ ନେବାବେଳେ ?

କେବେ ଶୁଣିଛ କି
ଗୁମୁରି ଗୁମୁରି କାନ୍ଦୁଥିବା ପବନର ବିଳାପକୁ,
ଯେବେ ଶିକାରରେ ଯାଇ
ସାରା ରାତି ବିତେଇଛ ଗୋଟେ ଡଙ୍ଗାରେ
ଏବଂ ହ୍ରଦର କୁନି କୁନି ଢେଉମାନେ
କରୁଥା'ନ୍ତି କୁଳୁ କୁଳୁ ଧ୍ୱନି ?

ଜାବୁଡ଼ି ଧରିବା ଲାଗି
ରଣିଫୁଲିଆ ରାତିରେ ପୂର୍ଣ୍ଣିମାର ଜହ୍ନକୁ
ଯେବେ ଧାଉଁଥାନ୍ତି ଅସଂଖ୍ୟ ଛାଇମାନେ
ଏବଂ ସମୁଦ୍ର କୂଳର ଏକ ଚର୍ଚ୍ଚର
କାନ୍ଥକୁ ଆଉଜି ତୁମେ
ଶୁଣିଛ କି କେବେ ତୁମ ଜରାୟୁର ପ୍ରତିଧ୍ୱନି ?

ଶହେ ବାର ଜଳିବା ପରେ ବି
ତଥାପି ମୁଠାଏ ମାଟି ଏ ଦେହ
ଅଥଚ ଥରୁଟିଏ ଜଳିଗଲେ
ଏ ଆତ୍ମା ପାଲଟି ଯାଏ ସୁନା

ହୃଦୟ ଦେଖିଛ କେବେ
ଅନୁଭବ କରିଛ କି ତାକୁ ?



# ସ୍ମୃତିର ସବୁଜ ଅରଣ୍ୟ...

**I have more memories than if I were a thousand years old.**

***Charles Baudelaire*** (1821-67)
French poet

## ଗାଲିବଙ୍କ ଛବି

ଅସମାହିତ ତର୍କ ପରି ଛନ୍ଦାଛନ୍ଦି
'ବଲ୍ଲିମାରା'ର ଗଳିକନ୍ଦି,
କାଠ ଗୋଦାମର ଗୋଟେ କୋଣରେ
ପଡ଼ି ରହିଛି ତ୍ରସ୍ତରେ
ପ୍ରଶସ୍ତି ଫଳକ ସବୁ,
ଝୁଲୁଛି ଛିଣ୍ଡା ଅଖାର ପରଦା
ଜହ୍ନ ପରି କବାଟ ଉପରେ ।

ଅସ୍ପଷ୍ଟ ଆଲୋକହୀନ ଛାଇ
ଜାବୁଡ଼ି ଧରିଛି କାନ୍ଥକୁ
ଯେମିତି ଚୂଡ଼ିବାଲାନ୍ ବଜାରରେ 'ବଡ଼ି ବି'
ଅନ୍ଧ ଆଖିରେ ଦରାଣ୍ଡୁଛି ବନ୍ଦ ଦରଜାକୁ

କାସିମ୍ ଗଳିର ଅନ୍ଧାର ରାସ୍ତାରେ
ଆରମ୍ଭ ହୁଏ ଆଲୋକର ସାଜସଜ୍ଜା :
ସୁବର୍ଣ୍ଣର ପତ୍ରଟି ଖୋଲିଦିଏ
କୋରାନ୍‌ର ବର୍ଣ୍ଣନା
ଏବଂ ଅସାଦୁଲ୍ଲାହ ଖାନ୍ ଗାଲିବ୍‌ଙ୍କ
ଠିକଣା ମିଳିଯାଏ ।

## ନାସିରୁଦ୍ଦିନ ଶାହଙ୍କ ପାଇଁ

ଜଣେ ଅଭିନେତା ମୁଁ !
ଅନ୍ତତଃ ଜଣେ ଅଭିନେତା ମୁଁ
ଆଉ ଅନେକ ଜୀବନ ଜିଇଁବାକୁ ହୁଏ
ଏକା ସାଙ୍ଗରେ ମୋତେ

ପ୍ରତିଦିନ ମୋ ଚରିତ୍ର ବଦଳୁଥାଏ ସେଟ୍‌ରେ
ବଦଳୁଥାଏ ମୋ ପରିସ୍ଥିତି,

କାହାଣୀ ଆଉ ଦୃଶ୍ୟ
ଏପରିକି ମୋ ଅଭ୍ୟାସକୁ ସୁହାଇବା ଲାଗି
ବଦଳୁଥାଏ ମୋର ମୁହଁ ।

ଏବଂ ତା'ପରେ
ଦାଗ ଛାଡ଼େ ନାହିଁ ମୁଁ ପିନ୍ଧିଥିବା ପୋଷାକର
ପୋଷାକର ଭାଙ୍ଗରେ ଲାଖି ରହେ
କିଛି କ୍ଷତାକ୍ତ ଚରିତ୍ରଙ୍କ ଅବଶିଷ୍ଟାଂଶ
କେଉଁ ପ୍ରଭାବଶାଳୀ ଚରିତ୍ରର ରକ୍ତ ବି
ଦୌଡୁଥାଏ ଶିରା ପ୍ରଶିରାରେ

ଅନେକ କାଳ ଧରି ହୃଦୟରେ
ଆସନ ଜମାଇ ଥାଏ ସେମାନଙ୍କ ଚେହେରା
ସେ ଚରିତ୍ର ସବୁ କାଳ୍ପନିକ ନୁହେଁ
ବରଂ ଜୀବନର ବାସ୍ତବତାରୁ ହିଁ ନିଆଯାଇଥାଏ,
ଉଡ଼ାଇ ଦେଇ ପାରେନା ସେମାନଙ୍କୁ
ପଙ୍ଖାର ପବନ
ହୃଦୟରେ ଜମାଟ ବାନ୍ଧିଯାଏ
କାଳିରୁ ଝରି ଆସିଥିବା ସଂଳାପ ସବୁ,
ପରଦା ପାଇଁ ଲେଖା ଯାଇଥିବା ବାକ୍ୟ ସବୁ
ଜୀବନ୍ୟାସ ପାଇଯା'ନ୍ତି ମୋ ଜରିଆରେ ।

ଜଣେ ଅଭିନେତା ମୁଁ
କେବଳ ଜଣେ ଅଭିନେତା ନୁହଁ ମୁଁ,
ସମୟର ଏକ ପ୍ରତିଛବି ମୁଁ ।

## ପଞ୍ଚମ

ବର୍ଷାଦିନର କଥାସବୁ ମନେଅଛି, ପଞ୍ଚମ,
ଯେବେ ପାହାଡ଼ ତଳ ଉପତ୍ୟକାରେ
ରେଳ ଲାଇନ୍ ସବୁ ନଇଁ ନଇଁ ବାହାରୁଥିଲେ
କୁହୁଡ଼ି ଭିତରୁ !

ଏମିତି ଲାଗୁଥିଲା,
ସତେ ଯେପରି କୁହୁଡ଼ି ଭିତରେ
ଆମେ ଦୁହେଁ ଲଗାଲଗି ବସିଥିବା
ଦୁଇଟି ଗଛର ଚାରା ।

ଅନେକ ବେଳ ଯାଏଁ ଆମେ
ସେମିତି ବସି ରହିଥିଲେ ସେଠି
ଗତ ରାତିରେ ପହଞ୍ଚିବାକୁ ଥିବା
ଯାତ୍ରୀମାନଙ୍କ ବିଷୟରେ
ଗପି ଚାଲିଥିଲେ
ଯେଉଁମାନଙ୍କ ଆସିବା ବେଳ
ଘୁଞ୍ଚି ଘୁଞ୍ଚି ଯାଉଥିଲା ।

ଅନେକ ବେଳ ଯାଏ ବସିଥିଲେ
ରେଳ ଲାଇନ୍ ପାଖରେ
ଆଉ ଅପେକ୍ଷା କରିଥିଲେ
ଟ୍ରେନ୍ ଆସିବାକୁ

ଟ୍ରେନ୍ ଆସିଲା
ହେଲେ ଟ୍ରେନ୍ ଛାଡ଼ିବା ସମୟ ହୋଇ ନ ଥିଲା
ଅଥଚ ଦୁଇପାଦ ଆଗେଇ ଯାଇ
କୁହୁଡ଼ି ଭିତରେ
ଅଦୃଶ୍ୟ ହୋଇଗଲ ତୁମେ

ଏବେ ମୁଁ
କୁହୁଡ଼ି ଭିତରେ ଏକୁଟିଆ, ପଞ୍ଚମ !

*(○ ରାହୁଲ ଦେବ ବର୍ମନ)*

## ବୋସ୍କି

ସମୟ ଯିବା, ଆସିବା
ଅଥବା ବିତିବା
ଦେଖିନି ମୁଁ,

ନା କେଉଁ ନୈସର୍ଗିକ ଚେହେରା
ଓହ୍ଲାଇ ଆସିବା ପରି ଧରାପୃଷ୍ଠକୁ
ଦେଖିଛି ତାକୁ ମୁଁ ।

ପାଦ ଚିପି ଚିପି ସେ ଆସିଥିଲା
ବୋଧହୁଏ ସ୍ୱପ୍ନମାନଙ୍କରୁ ମୋର
ଏବଂ ଭାବନା ସବୁ ମୋର
ପାଇ ନ ଥିଲେ ତା'ର ଆଭାସ ।

ଯେଉଁଦିନ ରଙ୍ଗରେ ଭରି ଯାଇଥିଲା
ତୋ'ର ଆଖି
ଚିହ୍ନି ପାରି ନ ଥିଲି ସେବେ ମୁଁ
ହେଲେ ଚୁମା ଦେଇଥିଲି ସମୟକୁ ।

ତା'ର ଦରୋଟି ଶବ୍ଦରେ
ଶୁଣି ପାରିଥିଲି ମୁଁ
ତା'ର ପାଦ ଶବ୍ଦ,
ଯେବେ ପଡ଼ିଥିଲା
ତା'ର ଦୁଧଦାନ୍ତ
ସେବେ ବି ମୁଁ
ଦେଖିଲି ତାକୁ
ପିଣ୍ଡୁଳାଏ ଚିକ୍କଣ ରେଶମ ପରି
ମୋ ଝିଅ ବୋସ୍କି
ଗୁଡ଼େଇ ହେଇ ଶୋଇଥିଲା
ରେଶମୀ କପଡ଼ାରେ
ସମୟ ସେଠାରେ
ଚୁପ୍‌ଚାପ୍ ଶୋଇଥିଲା ବୋଲି
ଧାରଣା ହେଇ ନ ଥିଲା ମୋର
ଝୁଲଣାରୁ ନେଇ
ମୁଁ ଯେବେ ତାକୁ
ଶୁଆଇ ଦେଲି ବିଛଣାରେ,
ନାନା ବାୟା ଗୀତ ଗାଇ ଗାଇ
ଆଉଁସି ଦେଇଥିଲି ଥରେ

ବଢୁଥିବା ନଖମାନଙ୍କୁ ତା'ର
ଅନେକବାର କରିଥିଲି ଛୋଟ ।

ଅନବରତ ହାତର ଏ ପାଖ
ସେ ପାଖ ହେଉଥିଲା
ତା' ହାତର କାଚ
ଆଉ କେବେ କେବେ
ଧରୁଥିବା ଅବା ଖସିପଡୁଥିବା
ତା' ହାତର ବହିରୁ
ଜାଣି ପାରୁ ନ ଥିଲି ମୁଁ
ସମୟ ଲେଖା ହେଇଛି ବୋଲି
ସେଠାରେ ।

ସମୟ ଆସିବା, ଯିବା ନା ବିତିବା
ଦେଖିଛି ମୁଁ,
ନା କେଉଁ ନୈସର୍ଗିକ ଚେହେରା
ଓହ୍ଲାଇ ଆସିବା ଧରା ତଳକୁ
ଦେଖିଛି ମୁଁ
କେବଳ ଗୋଟେ ଜାଗାରେ
ଏକାଠି ହେଇଯିବା
ଦେଖିଛି ମୁଁ

ଏ ବର୍ଷ ବୋସ୍କିକୁ
ଅଠର ବର୍ଷ ହେଇଯିବ ।

## ବାବାଙ୍କ ଛବି

ଘଞ୍ଚ ବୃକ୍ଷର ଘନ ଛାୟାରେ
ଏତିକି ଜାଗାରେ ପଡୁଥାଏ ଖରା
ସତେ ଯେପରି
ଗୋଲାକାର, ଚକ୍‌ମକ୍ ତଥା ସିଝି ଯାଇଥିବା
ଶହ ଶହ ଟଙ୍କାର ଶବ୍ଦ
ବିଛେଇ ହେଇ ପଡ଼ିଛି;
ଜଣା ନାହିଁ
କ'ଣ ସବୁ ଲେଖି ଯାଉଛି ଏ ଖରା
ଛାଇରେ ପଡ଼ି ପଡ଼ି ।

ବର୍ଷ ବର୍ଷ ଧରି
ମୁଁ ବି ଯାଇଛି

ସେ ଗଛର ଛାଇ ପାଖକୁ
ଆଉ ପକେଟରେ ମୋର ଭର୍ତ୍ତି କରିଛି
ସେ ସବୁ ଟଙ୍କା
ଏବଂ ନିର୍ଜନତାକୁ ସବୁବେଳେ
ପାଖରେ ବସେଇ
ଅନେକ ବେଳଯାଏ
ଶୁଣିଛି ଠଣ୍ ଠଣ୍ ଶବ୍ଦ
ସେ ଟଙ୍କାମାନଙ୍କର ।

ସେମାନଙ୍କ ଉପରେ ବାରି ହେଇ ପଡୁଥିବା
ଚେହେରାକୁ କେବେ କେବେ ପଢୁଥିଲି
ଏବଂ କେବେ କେବେ ପୁଣି
ଶୁଣାଉଥିଲି କାହାଣୀ ଓ କବିତା
ମହାନ୍ ସେଇ କବିର ବଗିଚାରେ
ଘନଛାୟା ତଳେ
ଶୁଣିଛି ମୁଁ ଅନେକ ପ୍ରଶ୍ନ

ଏବେ ବି ମୁଁ ଯେବେ
ମୋର ପ୍ରିୟ ବୃକ୍ଷ ପାଖକୁ ଯାଏ
ଚଟ୍‌କିନା ଭରିଦିଏ ସେ ମୋ ଖାଲି ଝୁଲାରେ
ନୂଆ ଗୀତ, ନୂଆ ଗଜଲ, ନୂଆ କାହାଣୀରେ ।
ସେଇ ପ୍ରିୟ ବୃକ୍ଷଟି ମୋର ଅନ୍ତରଂଗ ବନ୍ଧୁ,
ମୋର ବାବା,
ଯାହାକୁ ଲୋକେ ଖୁସିରେ ଡାକନ୍ତି, 'ନଦୀମ୍ ।'

# ସଲିଳ ଚୌଧୁରୀଙ୍କ ଛବି

ଚହଲୁ ଥିବା ପାଣିର ଚଟାଣ,
ସୂତା ଖିଅରେ ବନ୍ଧାହେଇଥିବା
ବଢ଼ି ପାଣିର ସ୍ୱର
ଟିକିଏ ଆଘାତରେ ବି
କରୁଥାଏ ଝଣ୍ ଝଣ୍
ଧାରୁଆ ଚାକୁ ଦାଢରେ
ଚିକ୍କଣ କରୁଥିବା
ଦେହର ମାନଚିତ୍ର
ଉଦ୍‌ବିଗ୍ନ ଚେହେରା ଉପରେ
ଉଡୁଥିବା ଆଖିର ବର୍ଣ୍ଣମାଳା,
ଗୋଟେ ପାଠାଗାରରେ ଥାଇ
ଲାଗୁଥାଏ
ଯେକୌଣସି ମୁହୂର୍ତ୍ତରେ
ଉଡି ଚାଲିଯିବ
ନିଜ ପୃଷ୍ଠାମାନଙ୍କ ପାଖରୁ
ବିଚଳିତ ହେଇ ।
କେବେ ଯିମିତି ପଳେଇ ନ ଯାଏ
ନିଜ ସମସ୍ୟାରେ ବିଚଳିତ ହେଇ ଉଡାଣ ।

## ବିମଳ ରାୟଙ୍କ ଛବି

ସଂଧ୍ୟାର କୁହୁଡି ଭିତରେ
ବହୁଥିବା ଚୁପ୍‌ଚାପ୍ ନଦୀର ଚେହେରା
ଗହମ ରଙ୍ଗର କୁହୁଡ଼ିରେ
ଜଳୁଥିବା ଆକ୍ଷିର ଦୀପଶିଖା
ଅନବରତ ଜଳୁଥିବା
ଗୋଟେ ସିଗାରେଟ୍‌ର ଧୂଆଁ
ନିଦରେ ହଜି ଯାଇଥିବା
ଦୂରର୍ ଏକ ହାଲ୍‌କା ସ୍ୱର

ଅଜଣା ସ୍ୱପ୍ନଙ୍କ
ଉଡୁଥିବା ଛାଇମାନଙ୍କ ତଳେ
ମହମବତୀ ପରି ତରଳୁଥିବା
ଦେହର ଆକୃତି
ପ୍ରତିଟି ନୂଆ ସ୍ୱପ୍ନର ଧୂନ୍ ଶୁଣି
ବଦଳି ଯା'ନ୍ତି,
ଏମିତି ଲାଗେ ଯେପରି
ନା ଶୋଇବ ନା ଉଠିବ
ନା କେବେ କିଛି କହିବ
ସଂଧ୍ୟାର କୁହୁଡି ଭିତରେ
ବହୁଥିବା ଚୁପ୍‌ଚାପ୍ ନଦୀର ଚେହେରା ।



# କେବେ ତୁମେ ଜହ୍ନର ବେଲୁନ୍,
# କେବେ ମୁଁ ରାତିର ଆକାଶ...

**Who knows if the moon's a ballon,**
**Coming out of a keen city**
**in the sky - field with pretty people ?**

- *e.e. cummings* (1894-1962),
US poet,
used for the title and epigraph of David Niven's first volume of autobiography, The Moon's a Ballon, about the experience in the film industry.

## ପରିବର୍ତ୍ତନ

ଜଙ୍ଗଲରେ ଯାଉଥିବା ବେଳେ
କେବେ କେବେ ଛୋଟ ଗାଁ'ଟେ ବି
ଆସି ଯାଉଥିଲା ଠାଏ ଠାଏ

ଏବେ ଗାଁରେ ଯଦି କେବେ
ନଜରକୁ ଆସେ ଗଛଟିଏ
ଉଲ୍ଲାସରେ ଭରିଯାଏ ମନ

କାନ୍ଥରେ ସବୁଜ ରଙ୍ଗ ଦେଖିଲେ
ମନେ ପଡ଼ିଯାଏ
ଜଙ୍ଗଲ ଥିଲା ଆଗ କାଳରେ ।

# ବିଶ୍ୱ

କୋଟିଏ ବର୍ଷ ପରେ
ଯେବେ ଲିଭିଯିବ ସୂର୍ଯ୍ୟର ଉତ୍ତାପ
ଏବଂ ପାଉଁଶ ଉଡ଼ିବ ସୂର୍ଯ୍ୟଙ୍କ ପିଠିରେ
ଏବଂ ବୁଡ଼ିବ ନାହିଁ ଜହ୍ନ
ଏବଂ କଅଁଳିବ ନାହିଁ ମାଟି
ଯେବେ ପୋଡ଼ି ସାରିଥିବା ଟୁକୁଡ଼ାଏ
ଶୀତଳ କୋଇଲା ପରି
ଏ ପୃଥିବୀ ଭୁଲି ଯାଇଥିବ ଘୂରିବା
ଛାଡ଼ି ଆସିଥିବ ପଛରେ
ଏକ ମଳିନ ଆଭା

ସେତେବେଳେ, ମୁଁ ଭାବୁଛି
ଯଦି କାଗଜରେ ଲେଖା ହେଇଥିବା ଗୋଟେ କବିତା
ଉଡ଼ି ଉଡ଼ି ଖସି ପଡ଼େ ସୂର୍ଯ୍ୟଙ୍କ ପିଠିରେ
ତେବେ ପୁଣିଥରେ
ସୂର୍ଯ୍ୟ ଆରମ୍ଭ କରିବ ଜଳିବା ।

## ବନ୍ଦୀ

ଯେବେ ମୁଁ ସହରକୁ ଆସିଲି
ଅଳସ ଆଉ ଝାପ୍‌ସା ଥିଲା ସନ୍ଧ୍ୟା
ସମୟ ବି ହେଇ ଯାଇଥିଲା ବାସି
କାନ୍ଥମାନଙ୍କରେ ଟଙ୍ଗା ହେଇଥିଲା ନୀରବତା

ଗଳିମାନଙ୍କରେ ନ ଥିଲା ଟୁକୁଡ଼ାଏ ଛାଇ
ନା ଥିଲା ଅନ୍ଧାର
ନା ଥିଲା ଆଲୁଅ ସେ ଗଳିମାନଙ୍କରେ

ବନ୍ଦ୍ ଥିଲା ଦୁଆର
ନିବୁଜ ଥିଲା ଝରକା ସବୁ
ରାସ୍ତାରେ କେବଳ ପଡ଼ିଥିଲା ଏଣେତେଣେ
ବାସି ସମୟର କିଛି ଟୁକୁଡ଼ା

ଏକା ଏକା ଘୂରିଲି ମୁଁ ସାରା ସହର
କବାଟରେ କରାଘାତ ଦେଇ ଡାକିଲି :
ସବୁ ଗଳିର ମୋଡ଼ରେ ହିଁ
ଅଟକି ଯାଇଥିଲି
କାଳେ କିଏ ଆସିଯିବ ବୋଲି
ହେଲେ ନା କୌଣସି ପାଦଶବ୍ଦ,
ନା ଛାଇଟେ ବି ଆସିଥିଲା ।

ଅଥଚ ଅଚାନକ
ନିଦରୁ ଉଠି ପଡ଼ିଲା ଏ ସହର
ସେମାନଙ୍କ ସ୍ୱର ସବୁ
ଏବେ ଘେରି ସାରିଲାଣି ମୋତେ
ଏବେ ଏ ସହରରେ ମୁଁ
ସ୍ୱରମାନଙ୍କ ଭିତରେ
ଏବେ ମୁଁ ପାଲଟି ଯାଇଛି ବନ୍ଦୀ ।

## ପରାମର୍ଶ

ଏ କବି,
ଯିଏ ଆଜନ୍ମରୁ ମୋ ସାଥିରେ ରହି ଆସିଛି
ସେ ହିଁ ଭରି ଦେଇଛି ମୋ ଛାତିରେ
ଜ୍ୟୋସ୍ନାର ବାଲି
ବାଛି ବାଛି ଯନ୍ତ୍ରଣା ଭରି ଦେଇଛି
ମୋ ଆକ୍ଷିରେ,
ଖିନ୍‌ଭିନ୍ କରିଛି ମୋର ପ୍ରାଣକୁ
ଦାନ୍ତରେ,
ଭରିଦେଇଛି ନିଶ୍ୱାସ ପ୍ରଶ୍ୱାସରେ ଜ୍ୱଳନ
କାନ୍ଧରେ ମୋର ଢାଳିଛି
ଟକ୍ ମକ୍ ଫୁଟନ୍ତା ଲୁଣ ପାଣି
ଆଉ ମୋତେ କହେ :
'ଯନ୍ତ୍ରଣା ହିଁ ଦିଏ ଅସଲ ପରିଚୟ ।'

ନିଜେ ହିଁ ହଡ଼ବଡ଼େଇ ଯାଇଛି ଆଜି
ନିଜ ଯନ୍ତ୍ରଣାରେ ଏ କବି
ଏବଂ ମୋତେ ଡାକୁଛି :
'ଆ, ଆତ୍ମହତ୍ୟା କରିବା ।'

**ଏଇ ପ୍ରାର୍ଥନା ମୋ ପାଇଁ**
**କରିଥିଲେ ଗାଲିବ୍**

ଠିକ୍‌ଠାକ୍ ରହ ତୁ ହଜାରେ ବର୍ଷ
ଏଇ ପ୍ରାର୍ଥନା ମୋ ପାଇଁ
କରିଥିଲେ ଗାଲିବ୍

ଏତେ କାଳ ତ
ଚାଲିଗଲା ବେକାରରେ !

## ସୁବର୍ଣ୍ଣା

ଆକାଶରେ ଉଡୁ ଉଡୁ
ମୁଁ ଦେଖିଲି ରାତିର ଯମଜ ସହର
ସେ ଶ୍ୟାମଳ ଆଲୋକ ପଛରେ
ଚକ୍‌ମକ୍ କରୁଥିବା ନିଦର ଯାଆଁଳା ଦ୍ୱୀପ
ସତେ ଯେପରି 'ବନଲତା ସେନ୍' ପରି
କଳା ଆଉ ଡିମା ଦୁଇ ଆଖି

ଆକାଶରେ ଉଡୁ ଉଡୁ
ତାକୁ ମୁଁ ଭେଟିଲି ଶୂନ୍ୟରେ
ବୁଣ୍ଣୁ ବୁଣ୍ଣୁ ଦୁଇ ଯମଜ ସହରକୁ
ବୁଣ୍ଣୁ ବୁଣ୍ଣୁ ରାତିର ସୀମାଙ୍କୁ

ରାତିର ଦୁଇ ପକ୍ଷୀ ପରି
ଘୂରୁଥିଲା ତା'ର ଆକ୍ଷି
ରାତିର ଦୁଇ ଭଗ୍ନୀ ପରି
ଭାସୁଥିଲେ ଛାୟା ପଥେ

ସତେ ଯେପରି
'ବନଲତା ସେନ' ପରି
କଳା ଆଉ ଢିମା ଦୁଇ ଆକ୍ଷି
ସବୁବେଳେ ତୁମେ ଉଡୁଥାଅ
ସାରା ଆକାଶରେ, ସୁବର୍ଣ୍ଣା !

ତଳକୁ ଓହ୍ଲାଅ ଥରେ
ପବନର ଗୁରୁଚ୍ଛପରେ
ଆଉ ପାଦ ଥାପି ଦେଖ ଏ ଭୂଇଁକୁ
ତୁମ ଆଖିର କିଛି ସମୁଦ୍ର ବି ଏଠି ଅଛି
ଯଦିଓ ଏଡ଼େ କଳା ଆଉ ସୁଗଭୀର ନୁହେଁ
ଯିମିତି ଥିଲା 'ବନଲତା ସେନ୍'ର
ଦୁଇ ଆଉ ଢିମା ଦୁଇ ଆକ୍ଷି ।

## ଦିନେ

ଧୂଳି ଆଉ ମାଟିରେ ନେସି ହେଇ
ଥକି ଯାଇ, ଧଇଁ ସଇଁ ହେଇ
କୋଳାହଳରେ ଛନ୍ଦି, ଆକ୍ତା ମାକ୍ତା ହେଇ,
ସିଝି ସିଝି, ଝାଉଁଳି ପଡ଼ି
ତରତର ହେଇ, ଦୌଡ଼ି ଦୌଡ଼ି
କାନ୍ଥରେ ହାମୁଡ଼ି ପଡ଼ି

ରାତି ଆସିବା ଆଗରୁ
ଏ ଦିନ ସରିଯାଉ
କୌଣସି ଶୀତଳ ସମୁଦ୍ର ବେଳାରେ
ହେଉ ତା'ର ମୃତ୍ୟୁ
ଯେବେ ରାତି ଆସିବ
ପୁଣି ଥରେ ଉଖାରିବ
ମୋ ଘା'କୁ ।

## ମୁଖା

ସ୍ୱଚ୍ଛ ଦିବାଲୋକରେ ସାରାଦିନ
ଚାବୁକ୍ ମାରେ ମୁଁ ଗୋଲାମମାନଙ୍କୁ
ବିକେ ଆଉ କିଣେ ବି ସେମାନଙ୍କୁ

ଉଆସ ଆଢ଼େ ଚାହିଁ
ପାଟି କରି ହସେ
ମାଲିକମାନଙ୍କୁ ଖୁସି କରିବା ଲାଗି
ଯେବେ ନିଜକୁ ନିଲାମ କରେ ମୁଁ
ସ୍ୱଚ୍ଛ ଦିବାଲୋକରେ ସାରାଦିନ
ବୁଝାମଣା ଆଉ ମୂଲଚାଲ
କରୁଥାଏ ମୁଁ
ଆଉ ସାରା ରାତି ଏକା ଏକା
ମୁହଁ ଗୁଞ୍ଜି କାନ୍ଦୁଥାଏ ମୁଁ ।

# ଈଶ୍ୱର

ଖୁବ୍ ଖରାପ ଲାଗିଥିବ ତୁମକୁ,
ଈଶ୍ୱର,
ପ୍ରାର୍ଥନା କଲାବେଳେ ମୁଁ
ଯେବେ ହାଇ ମାରୁଥିଲି

ଯେବେଠୁଁ ମୋ କାନ ଶୁଣିଲା
ଆଉ ଆକ୍ଷି ଦେଖିଲା
ସେବେଠୁଁ ମୋର ମନେ ଅଛି
ଏମିତିକା କଥାଟେ
ପ୍ରାର୍ଥନାରେ ଯୋଡ଼ି ହେଇ ଯାଇଥିଲା :
ତୁମେ ହିଁ କରୁଛ ରାତି ଆଉ ଦିନ
ଭଲ ଆଉ ମନ୍ଦ ସବୁ ତୁମରି ଭିଆଣ
- ପ୍ରାର୍ଥନା କର ତୁମକୁ !

ଅଜବ କଥା ଯେ
ଏକତରଫା ଆଉ ନିରର୍ଥକ
କଥାବାର୍ତ୍ତା ଜଣକ ସହ
କଳ୍ପନା ହିଁ ଯାହାର ଚେହେରା
କଳ୍ପନା ହିଁ ଯା'ର ସ୍ଥିତିର ପ୍ରମାଣ ।

## ଯୁଦ୍ଧ

ଝରି ଝରି ସୂର୍ଯ୍ୟଙ୍କ ଘା'ରୁ
ବହି ଆସେ ବୁନ୍ଦା ବୁନ୍ଦା ଲାଲ୍ ରକ୍ତ
ଦୂର ଦିଗ୍‌ବଳୟରୁ
ଶୂନ୍‌ଶାନ୍ ସାଗରବେଳା ଯାଏ

ଏବେ ଧୂଳି ଧୂସରିତ ସୂର୍ଯ୍ୟଙ୍କ କିରଣ
ନିଜ ଦେହଛାଡ଼ି ଦୌଡ଼ୁଛି ଛାଇ

ଆଉ ଟିକିଏ ପରେ
ଜହ୍ନ ଉଡ଼େଇବ ଫର୍ ଫର୍
ତା'ର ଜୟଯାତ୍ରାର ପତାକା ।

ପୁଣିଥରେ ଜିତିଗଲା ରାତି,
ଆଜି ଆଉ ଥରେ
ହାରିଗଲି ମୁଁ ।

# ଖବର କାଗଜ

ସାରାଦିନ
ରକ୍ତରେ ଜୁଡୁବୁଡୁ ହେଉଥାଏ ମୁଁ
କଳା ପଡ଼ିଯାଏ ସେ ରକ୍ତ
ଶୁଖି ଶୁଖି ମୋ ଦିହରେ ଦିନସାରା
ଛେଲା ପଡ଼ିଯାଏ
ରାମ୍ପି ରାମ୍ପି ନଖରେ
ଚମଡ଼ା ଉଠିଯାଏ
ନାକ ପୁଡ଼ାରେ ବାଜେ
ତାଜା ରକ୍ତର ବାସ୍ନା
ଆଉ ଲୁଗାପଟାରେ ଲାଖିଯାଏ
କିଛି କିଛି କଳା ଦାଗ

ସବୁଦିନ ସକାଳୁ ସକାଳୁ
ଖବର କାଗଜ ଆସେ ମୋ ଘରକୁ
ରକ୍ତରେ ଜୁଡୁବୁଡୁ ହେଇ ।

## ରାଣ

କବିତାଟିଏ ରାଣ ଖାଇଛି
ଭେଟିବା ଲାଗି ମୋତେ,
ଯେବେ ଶିଥିଳ ସ୍ନାୟୁରେ ମୋର
ଯନ୍ତ୍ରଣା ଶୋଇଯିବ ଆରାମ୍‌ରେ;
କ୍ଲେଶସିକ୍ତ ଚେହେରା ନେଇ
ଆକାଶରେ ଯେବେ ଉଇଁବ ଜହ୍ନ;
ଦିନସାରା ଏବେ ଖାଲି ପାଣି ହିଁ ପାଣି
ରାତି ଆସିବ କୂଳ ପାଖକୁ
ନା ଥିବ ଏ ଦିନ ନା ରାତି;
ଯେବେ ନିଶେଷ ହେଇଯିବ ଏ ଦେହ
ଆଉ ମୁକ୍ତ ପବନ ନେଉଥିବ ଏ ପ୍ରାଣ ।

କବିତାଟିଏ ରାଣ ଖାଇଛି
ଭେଟିବା ଲାଗି ମୋତେ ।

# ପଡ଼ୋଶୀ

କେଇଦିନ ହେଲା
ମୋ ପଡ଼ିଶା ଘର ଏକଦମ୍ ଚୁପ୍‌ଚାପ୍
ଶୁଣା ଯାଉନି ସେଠି ରେଡିଓର ସ୍ୱର
ନା ରାତିରେ ଅଗଣାରେ
ବାସନ କୁସନ ଫୋପାଡ଼ିବାର ଶବ୍ଦ

ସେ ଘରେ ଥିବା ପୋଷା କୁକୁର
ମୋ ଘରେ ଦିନସାରା ଖାଇବା ଲାଗି
ନସର ପସର ହେଉଥାଏ,
ଆଉ ରାତିରେ ଫେରିଯାଇ ଚୁପ୍‌ଚାପ୍
ଶୋଇଯାଏ ସେ ଘରର
ଏରୁଣ୍ଡି ବନ୍ଧରେ ମୁଣ୍ଡ ରଖି ।

## ଟୁକୁଡ଼ାଏ କବିତା

ସାରାଦିନ ମୋ ଗଳାରେ
ଅଟକି ରହିଥିଲା ଟୁକୁଡ଼ାଏ କବିତା

ଓଠ ପାଖକୁ ଆସିଲା ତ
ଜିଭ ଚିରିଗଲା
ଦାନ୍ତରେ ଚାପି ଧରିଲି ତ
ଛାଲି ପଡ଼ିଗଲା ଓଠରେ

ନା ଫିଙ୍ଗି ପାରିଲି ପାଟିରୁ
ନା ଗିଳି ପାରିଲି ତାକୁ
ଅଟକି ଯାଇଛି ଧୀରେ
ଯିମିତି କାଚର ଟୁକୁଡ଼ାଏ

କବିତାର ଟୁକୁଡ଼ାଟିଏ
ଅଟକି ରହିଥିଲା ମୋ ଗଳାରେ ।

## ଆସ ଏବେ ଭାଷାକୁ ବାଣ୍ଟିବା

ଏବେ ଆସ
ବାଣ୍ଟିନେବା ନିଜନିଜ ଭାଷାକୁ
ନା ତୁମେ ଶୁଣିବ ମୋ କଥା
ନା ମୋତେ ବୁଝିବାର ଅଛି ତୁମକୁ
କେତେ ଦରଜ ସତରେ
ଦୁଇ ଅପାଠୁଆଙ୍କର
ଶିଷ୍ଟାଚାର ପ୍ରତି ।

## ବନ୍ଧୁ

ବିନା ସାଙ୍ଗ ସାଥିରେ
କଟିଗଲା ସାରାଦିନ
ନିଜ ଲାଗି ବି ଖୁବ୍ ଅଚିହ୍ନା
ଏକାକୀ ଓ ଦୁଃଖି

ସମୁଦ୍ର ବେଳାରେ ସାରାଦିନ କଟାଇ
ଫେରି ଆସିଲି ପୁଣି ମୁଁ
ଶୂନ୍‌ଶାନ୍ ସଡ଼କ କଡ଼ର ଏକୁଟିଆ କୋଠାଟିର
ସେଇ ଖାଁ ଖାଁ ଘର ଭିତରକୁ ।

ଦରଜା ଖୋଲୁ ଖୋଲୁ
ଫଡ଼୍ ଫଡ଼୍ ହେଉଥିଲା
ଟେବୁଲ ଉପରେ
ରଖା ଯାଇଥିବା ବହିର ପୃଷ୍ଠା ସବୁ
ଏବଂ କହୁଥିଲା :
'ଡେରି କରିଦେଲ ବନ୍ଧୁ ।'

## ଅଚିହ୍ନା

ନିଜ ଘରେ ଆସି
ଅଚିହ୍ନା ପାଲଟିଛି ମୁଁ

ମୋ ଆତ୍ମା ଡରି ଯାଇଛି
ଏଠି ମୋତେ ଦେଖି

ଇଚ୍ଛାମାନେ ଆତ୍ମଗୋପନ କରିଛନ୍ତି
ଘର କୋଣରେ ।

# ରେ ବୁଢ଼ୀ

ବୁଢ଼ୀ ତୋ ସହ ମୁଁ
ସବୁକିଛି ବାଣ୍ଟିଦେଲି :
ଖାଇବା, ପିଇବା, କପଡ଼ା, ନିଦ ଆଉ ବିନିଦ୍ର ରଜନୀ
ପିଲାଛୁଆ ଜନ୍ମ କରିବା, ସେମାନଙ୍କ ଥଇଥାନ
ଏବଂ ସେମାନେ ଆମଠୁଁ ଅଲଗା ହେଇଯିବା ଯାଏ,
ସବୁ କିଛି, ଜୀବନର ପ୍ରତିଟି ସୋପାନ !

ତୋତେ ବାଣ୍ଟିଦେଲି ବିଚ୍ଛେଦର ଦୁଃଖ,
ରାଗରଷା, ମିଳନ ଆଉ ନୀରବତା ବି
ତୋତେ ବାଣ୍ଟିଦେଲି
ଯେତେ ସବୁ ହଟଚମଟ, ସତ ଆଉ ମିଛ
ସହିଲୁ ତୁ ବି ଯନ୍ତ୍ରଣା ମୋର
ମୋ ଦେହ ଦେଇ ଝରିଗଲା ସବୁଦୁଃଖ ତୋର
ସାଥି ହେଇ ଆମେ ଜୀବନ ଜିଇଁଲେ
ହେଲେ ସାଂଗ ହେଇ ମରିବା
- ୟେ କିମିତି ସମ୍ଭବ ?
ଏକୁଟିଆ ଫେରିବାକୁ ହିଁ ପଡ଼ିବ
ଦିନେ ନା ଦିନେ ଆମ ଭିତରୁ ଜଣେ
ଆରଜଣକୁ ଛାଡ଼ିଦେଇ ଚିତାଗ୍ନି ପାଖରେ ।

# ନିଜ ଛବି

ମୋର ବି ଗୋଟେ ନାଆଁ ଥିଲା ବୋଲି
ଭାବି ନ ଥିଲି କେବେ
'ମୁଁ କହୁଛି' ଜଣେ ଏମିତି ସଂବୋଧନ କଲା
'ଶୁଣନ୍ତୁ ମହାଶୟ' ଆଉ ଜଣେ ଡାକିଲେ
'ଆବେ ହେ' ବୋଲି ଡାକୁଥିଲେ ସାଙ୍ଗମାନେ
ଯାହା ମନକୁ ଯିମିତି ଆସିଲା
ସେମିତି ନାଆଁରେ ଡାକୁଥିଲେ ମୋତେ

ହଠାତ୍ ଦିନେ
ତୁମେ ମୋତେ 'ଗୁଲ୍‌ଜାର' ନାଆଁରେ ଡାକିଲ
ଶାମୁକାର ପେଟ ଚିରି
ବାହାରି ଆସିଲା ଗୋଟେ ମୁକ୍ତା
ଆଉ ଜୀବନର ନୂଆ ଅର୍ଥଟିଏ
ଖୋଜି ପାଇଗଲି ମୁଁ ଯିମିତି ।

ଆଃ, ଭାରି ସୁନ୍ଦର ନାଆଁ ଏଇଟି,
ପୁଣି ଥରେ ମୋ ନାଆଁ ଧରି ଡାକ ତ !



# କବି, କବିତା, ସ୍ୱପ୍ନ ଓ ମୃତ୍ୟୁର ଶୀତଳ ସ୍ୱର...

**When I thought that I was learning how to live, I have been learning how to die.**

*Leonardo da Vinci* (1452-1519)
Italian artist

## ସେ ଯେଉଁ କବି ଥିଲା

ସେ ଯେଉଁ କବି ଥିଲା
ରହୁଥିଲା ଖୁବ୍ ଚୁପ୍‌ଚାପ
କେବେ କେବେ ପୁଣି
କରୁଥିଲା ବକ୍ ବକ୍
ଆକ୍ଷି ଉପରେ କାନ ରଖି
ନିଶବ୍ଦ ନୀରବତାର ସ୍ୱର ଶୁଣିପାରୁଥିଲା ।

ଜହ୍ନର ଛାଇ ଆଉ ଶିଶିର ବୁନ୍ଦାକୁ
ଏକାଠି କରୁଥିଲା ସେ
ରାତିର ଶୁଖିଲା ପତ୍ରଙ୍କୁ
ପାପୁଲିରେ ରଖି କରୁଥିଲା ଖଡ୍ ଖଡ୍
ସମୟର ଏଇ ଘଞ୍ଚ ଜଙ୍ଗଲରେ
କଞ୍ଚା ଆଉ ପାଚିଲା ମୁହୂର୍ତ୍ତମାନଙ୍କୁ
ସାଉଁଟି ପାରୁଥିଲା ସେ ।
ହଁ, ଇଏ ସେଇ ଅଜବ କବି
ଯିଏ ରାତି ଅଧରେ ଗୁରୁଣ୍ଡି ଗୁରୁଣ୍ଡି
ଜହ୍ନର ଓଠରେ ଦେଉଥିଲା ଚୁମା

ଜହ୍ନରୁ ଖସିପଡ଼ି ମରିଗଲା ସିଏ,
କେହି କେହି କୁହା କୁହି ହୁଅନ୍ତି
ଆତ୍ମହତ୍ୟା କରିଛି ସିଏ ।

## କବିତା

କବିତାଟିଏ ରହିଯାଇଛି ହୃଦୟରେ,
ଓଠରେ ମୋର ଅଟକି ଯାଇଛି
ତା'ର ପଂକ୍ତି ।

ଶବ୍ଦମାନେ ବସୁ ନାହାନ୍ତି
କାଗଜ ଉପରେ,
ଏଣେ ତେଣେ ଉଡ଼ି ବୁଲୁଥିବା
ପ୍ରଜାପତିମାନଙ୍କ ପରି ।

କେବେଠୁଁ ବସିଛି ମୁଁ, ପ୍ରିୟତମା,
ସାଦା କାଗଜରେ
ତୁମ ନାଆଁ ଲେଖି ଦେଇ ।

କେବଳ ତୁମ ନାଆଁ ହିଁ ଯଥେଷ୍ଟ
ତା'ଠୁ ଆଉ ଅଧିକା
ଭଲ କବିତା କ'ଣ ଅଛି ?

## ଦେଖ, ଧୀରେ ଚାଲ

ଦେଖ, ଧୀରେ ଚାଲ, ଆଉ ଟିକେ ଧୀରେ
ଦେଖ, ଭାବିଚିନ୍ତି ପାଦ ଥାପ
ଯିମିତି ଜୋର୍‌ରେ କେଉଁଠି
ଶୁଣା ନ ଯାଏ ପାଦ ଶବ୍ଦ

ନୀରବତାରେ ବିଛେଇ ହେଇ ପଡ଼ିଛି
କାଚର ସ୍ୱପ୍ନ
ସ୍ୱପ୍ନ ଭାଙ୍ଗି ନ ଯାଏ ଯିମିତି
ଉଠି ନ ପଡ଼େ ଯିମିତି, ଦେଖ

ସ୍ୱପ୍ନ ଉଠିପଡ଼ିବ ତ
ମରିଯିବ ।

# ମଡ଼େଲ

କ'ଣ ପୂରା ଲଙ୍ଗଳା ଥିଲା
ତା'ର ପିଠି
ଚିରି ଯାଇଥିଲା ପିନ୍ଧିଥିବା
ତା'ର ପୋଷାକ
ଶୁଖି ଯାଇଥିଲା ଶୋଷରେ
ତା'ର ଓଠ
ଏବଂ ଓପାସ ଥିଲା ସେ
ଦିନେ ଦୁଇଦିନ ଯାଏ

ତୁମେ ଛିଣ୍ଡେଇ ଦେଇଥିଲ କି
ଓଠରେ ପଡ଼ି ଯାଇଥିବା ଛାଲି
ରକ୍ତର ଛିଟା ଲାଖିଥିବ ସେଠି ତା'ହେଲେ

ତେବେ ଏ ଛବି
ବିକ୍ରି ହେଇଯିବ ନିଶ୍ଚୟ ।

## ଋତୁ

ପାହାଡ଼ରେ ଯେବେ ତରଳେ ବରଫ
ଏବଂ ଉପତ୍ୟକାରୁ ଉଭେଇଯାଏ କୁହୁଡ଼ି
ତନ୍ଦ୍ରାଚ୍ଛନ୍ନ ଆକ୍ଷି ଖୋଲି
ମଞ୍ଜି ସବୁ ଯିବେ ଅଳସ ଭାଙ୍ଗି ଭାଙ୍ଗି
ଏବଂ ପାହାଡ଼ ପିଠିରେ
ଲହଡ଼ି ଭାଙ୍ଗୁଥିବ ସବୁଜିମା

ଭଲ କରି ଚାହଁ ବସନ୍ତର ଇଲାକାରେ
ପ୍ରସ୍ଫୁଟିତ କଢ଼ିର ଦୁଃଖଭରା ଆକ୍ଷିରେ
ଲାଖି ରହିଥିବ ହଜି ଯାଇଥିବା ଋତୁରୁ ଚିହ୍ନ
ଆଉ ଶୁଖି ନ ଥିବା ଲୁହର ଆର୍ଦ୍ରତା ।

# ପବିତ୍ର

ହଟାଇ ଦିଅ ସବୁ ଚିହ୍ନ
ଯାହା ଏକଦା ଥିଲା ତୁମ ପରିଚୟ

ଯଦି ତୁମେ ହଲୁଚ
ତେବେ କେଉଁଠି ବି ନ ଉଠୁ ତରଙ୍ଗ
ଯଦି ଠିଆ ହେଉଛ ତୁମେ
ତେବେ ପତ୍ରଟିଏ ବି ନ ହଲୁ
ପିନ୍ଧା ପୋଷାକର ସୂତାକୁ
ଗୋଟି ଗୋଟି କରି କାଢ଼ି ପକାଅ
ଯେମିତି ଗୋଟିଏ ବି ଶବ୍ଦ ତୁମକୁ
ନା କରିବ ସ୍ପର୍ଶ
ନା ଖସି ପଡ଼ିବ

ଏବେ ଏଇଠି ଥିଲ
ଏବେ ଏଠି ନାହଁ
ମନେରଖ, ଜୀବନର କୌଣସି ଲୋଚକୋଚା ଚିହ୍ନ
ଯେମିତି ମୃତ୍ୟୁର ପବିତ୍ର ଚେହେରାରେ
ଦାଗ ନ ଲଗାଏ ।

## ନିର୍ଜେ

ଚକ୍ ଚକ୍ ଦେଖା ଯାଉଥିବା
ଏବଂ ଠଣ୍ ଠଣ୍ ଶବ୍ଦ କରୁଥିବା
ଏ ଗୋଲ ଗୋଲ ମୁଦ୍ରାମାନଙ୍କର

କାହା ଉପରେ ରାଜାଙ୍କ ଚେହେରା ତ
କାହା ଉପରେ ରାଣୀଙ୍କ ଚେହେରା
ସବୁ ମୁଦ୍ରାର ଆର ପଟେ
ଲେଖା ହେଇଛି ନିଜ ନିଜର ଭାଉ
ଏବଂ ଯୁଆଡ଼େ ବି ଯା'ନ୍ତି ସେମାନେ
କେବେଳ ହାତରୁ ହାତକୁ ଦେଇ ।

ନିଜ ଚେହେରାକୁ ବଂେଇ ରଖ ତୁମେ
ଯଦି କେବେ ଲିଭିଯାଏ ଚିହ୍ନ
ତେବେ ଅଚଳ ଟଙ୍କାଟିଏ ପରି
ଗଣା ହେବ ତୁମେ ।

# ଏବେ ପକାଅନି ପରଦା

ଏବେ ପକାଅନି ପରଦା
ରୁହ, ଆହୁରି ବାକି ଅଛି କାହାଣୀ
ଏବେ ପକାଅନି ପରଦା, ରୁହ !

ଏବେ ଏବେ ତ ଫାଟିଛି କଞ୍ଚା ମାଟି
ଏବେ କେବଳ ଖସି ପଡ଼ିଛି ଦେହ
ଏବେ ଖାଲି ଯାହା ସରିଛି ଅଭିନୟ
ଏବେ ଧୀରେ ଧୀରେ ଜଳୁଛି ପ୍ରାଣର ଦୁଃଖ
ଏବେ ତ ଧଡ଼୍ ଧଡ଼୍ କରୁଛି କଳିଜା
ଏବେ ହିଁ ସତେଜ ରହିଛି ଅନୁଭବ

ଏଇ ନିଅ ବଞ୍ଚେଇ ରଖ
ଯାହା ଖସି ପଡ଼ିଛି ଚରିତ୍ର ହାତରୁ କ୍ଲାନ୍ତ ହେଇ
ଏଇ ନିଅ ବଞ୍ଚେଇ ରଖ
ଏଇଠୁଁ ହିଁ ପୁଣି ଉଡ଼ିଯିବ ଇଚ୍ଛା
ବଗୁଲୀଟିଏ ହେଇ
ଏଇଠୁ ଉଠିବ ଆଉ ଏକ ଚରିତ୍ର
ଏଇ ଆଲୁଅ ସାଥିରେ ପୁଣିଥରେ
କେବେ ବି ତ ପୁଣି ଇଚ୍ଛାମାନଙ୍କର ଫଳ
ମିଳିବ ଆମକୁ
ଏବେ ପକାଅନି ପରଦା, ରୁହ ।

## ହାୱା ମହଲ, ଜୟପୁର

ପଛରେ
ସନ୍ଧ୍ୟାର ହଳଦୀ ରଙ୍ଗ ଆକାଶର ଚଦର
ସାମ୍ନାରେ
ଟଣା ହେଇଛି ଦୁଇଟି ଲମ୍ବା ବିଜୁଳୀ ତାର
ତା' ଉପରେ ବସିଛନ୍ତି
କଳା କଳା ଦୁଇଟି ପକ୍ଷୀ
ଏମିତି ଧ୍ୟାନମଗ୍ନ ହେଇ ବସିଛନ୍ତି
ଯିମିତି କେହି ଜଣେ
ରଖି ଦେଇ ଯାଇଛି ସେଠି
ହିନ୍ଦୀର ବର୍ଣ୍ଣମାଳା
ଏବଂ ପ୍ରତିଟି ସନ୍ଧ୍ୟାରେ
କେହି ଜଣେ ରାଜକବି
ସେ ତା'ର ଉପରେ
ଲେଖିଯାଏ କବିତାର ପଂକ୍ତି !

## ବାଂଝ

ଏ ଶୀତଳ ଦିହରେ
ସ୍ଫୁଲିଙ୍ଗ ଉଠେ ନାହିଁ
କୌଣସି ଅଗ୍ନିକଣାର,
ତଣ୍ଟିରେ ଅଟକିଯାଏ
ନିଃଶ୍ୱାସର ଅତୁଆ ସୂତା ଖିଅ,
ବରଫ ପାଲଟି ଯାଇଥିବା ରକ୍ତରେ ମୋର
ଅଟକି ଯାଏ ପାଣି ଫୋଟକା,
ଆଖିପତାରେ ଜମାଟ ବାନ୍ଧୁଥିବା ନିଦ
ପାଲଟି ଯାଏ ପଥର,
ସାମ୍ନାରେ ନିସ୍ତେଜ ହେଇ ପଡ଼ି ରହିଚି ରାତି
ଟୁକୁଡ଼ାଏ କାଠ ପରି,

ଏ ଶୀତଳ ଦିହରେ
ସ୍ଫୁଲିଙ୍ଗ ଉଠେ ନାହିଁ
କୌଣସି ଅଗ୍ନିକଣାର
ନିଶ୍ଚୟ ସେ ହେଇଥିବ ବାଂଝ
ଯିଏ ଦେଇଛି ମୋତେ ଜନ୍ମ ।

## ପେଣ୍ଟିଙ୍ଗ୍

ଖଡ଼୍ ଖଡ଼୍ ଶବ୍ଦ ସହ
ସୂର୍ଯ୍ୟ ଉଠେ ଆକାଶରେ
କାଦୁଅ ଭିତରେ
ଧସିଯାଇଥିବା ଚକକୁ
କେହି ଜଣେ ଧକ୍କା ମାରୁଥାଏ
ଦାଢ଼ରେ ନେସି ହେଇଥାଏ
କଳାରଙ୍ଗର କାଦୁଅ ।

ସବୁଦିନ ପରି ଗୋଲ୍ ନୁହଁ ।

ଦିହ ଉପରେ ତା'ର ପଡ଼ିଥିବା ଆଲୁଅ
ଆବୁଡ଼ା ଖାବୁଡ଼ା
ଆଉ ମୁହଁରେ ବାରି ହେଇ ଯାଉଥାଏ
କ୍ଷତ ବିକ୍ଷତ ଚିହ୍ନ ।

# ଅର୍ଥ

ଛକ ପାଖରୁ ଯାଇ
ହାଟରୁ ବଜାର ଦେଇ
ଲାଲ୍ ବଜାର ପାରି ହେଇ
ଭାସିଯାଏ କାଗଜ ଡଙ୍ଗା

ବର୍ଷାର ଅଜଣା ତଥା ଛେଉଣ୍ଡ ପାଣିରେ
ବସିଛି ବିଚରା ଡଙ୍ଗାଟି
ସହରର ବେପରୁଆ ଗଳିକୁ
ଡରି ଡରି ପଚାରେ :
'ଯଦି ସବୁ ଡଙ୍ଗାର କୂଳଟିଏ ଅଛି
ମୋର ବି ନିଶ୍ଚେ ଥିବ ଗୋଟେ କୂଳ ?'

କିମିତି ହନ୍ତସନ୍ତ କରି
ଟୁକୁଡ଼ାଏ ଛିଣ୍ଡା କାଗଜକୁ
ନିରୀହ ପିଲାଟିଏ
କରି ଦେଇଛି
ଅର୍ଥହୀନରୁ ଅର୍ଥବାନ୍ ।

# ଧର୍ଷଣ

ସେପରି କିଛି ନ ଥିଲା
ଯାହା ପ୍ରାୟତଃ ଘଟେ ଚଳଚ୍ଚିତ୍ରମାନଙ୍କରେ !
ନା ଥିଲା ବର୍ଷା, ନା ପବନ, ନା ଜଙ୍ଗଲର ଦୃଶ୍ୟ
ଆସକ୍ତି ବଢ଼ାଇବା ଲାଗି
ନା ଥିଲା ଆକାଶରେ ଜହ୍ନ
ନା ବହି ଯାଉଥିବା ଝରଣା
ନା ଅଳସ ନଦୀର କୁଳୁ କୁଳୁ ସ୍ୱର
ଭାବନାର ଝଡ଼କୁ ଆଗେଇ ନେବା ଲାଗି
ନା ଥିଲା ଆବହ ସଂଗୀତ
ନା ଥିଲା ବର୍ଷାରେ ଭିଜି ଯାଇଥିବା
ବିଟପୀ ନାରୀର ଦେହ ।

କେବଳ ଥିଲା ଏକ ଅବଳା
ଦୁର୍ବଳା ବି,
କାରଣ ସେମାନେ ଥିଲେ ପୁରୁଷ
ଗୋଟେ କାନ୍ଥ କଡ଼କୁ ନେଇ
ଚାରିଜଣ ଲୋକ
ଧର୍ଷଣ କରିଥିଲେ ତାକୁ ।

## ଜାଲେଣି

ଆମେ ଯେବେ ପିଲା ଥିଲୁ
ମା' ଗୋବର ଘସି ପାରୁଥିଲା,
ଆଉ ଆମେ ସେଥିରେ
ତିଆରି କରୁଥିଲୁ ମୁହଁ
ଲଗାଉ ଥିଲୁ ଆଖି
ଗଢୁଥିଲୁ କାନ ଆଉ ନାକ ବି
ପିନ୍ଧାଉ ଥିଲୁ ଟୋପି ଅଥବା ପଗଡ଼ି

ଇଏ ମୋର
ଇଏ ତୋର

ନିଜର ପ୍ରିୟ ନାଁଟେ ବି
ଦେଉଥିଲୁ ପ୍ରତିଟି ଘସିକୁ

ସବୁଦିନ ସକାଳେ
ସୂର୍ଯ୍ୟଙ୍କ କିରଣ ଆସି ଖେଳୁଥିଲା
ଗୋବରର ଘସି ଉପରେ ।

ଅଗଣାରେ ଯେବେ
ଚୁଲି ଜଳୁଥିଲା ରାତିରେ
ଆମେ ସବୁ ଘେରି ବସୁଥିଲୁ ତାକୁ
ଦେଖିବା ପାଇଁ
କେଉଁ ଘସି ଚୁଲିକୁ ଯାଉଛି
ଆଉ କେଉଁ ଘସି
ପାଉଁଶ ହେଉଛି

ସେଇଟା ଗୋଟେ ଜ୍ଞାନୀ
ଏଇଟା ଗୋଟେ ଛୋଟ ପିଲା
ଆଉ ଜଣକ ନାଆଁ ଦଶରଥ

ବହୁ ବର୍ଷ ପରେ, ଆଜି ରାତିରେ
ଶ୍ମଶାନ ଘାଟରେ ବସିଛି ମୁଁ
ଜଳୁଛି ଜୁଇ
ଭାବୁଛି ମୁଁ
ଆଉ ଫଡ଼ାଏ ଘସି
ଆଉ ଜଣେ ବନ୍ଧୁ ଚାଲିଗଲା !

## ମୃଦୁ ଆଘାତ

ସକାଳୁ ସକାଳୁ ଦରଜାରେ
ସ୍ୱପ୍ନର ମୃଦୁ କରାଘାତରେ
ଦୁଆର ଖୋଲି ଦେଖିଲି
ସୀମା ଆରପଟୁ ଆସିଛନ୍ତି
କେଇଜଣ ଅତିଥି

ଆକ୍ଷିରୁ ଜଣା ପଡୁଥିଲା
ସେମାନେ ସବୁ ମଣିଷ

ଆଉ ଚେହେରାରେ
ସେମାନେ ଥିଲେ ନିର୍ଜୀବ

ହାତଗୋଡ଼ ଧୋଇଦେଲି ସେମାନଙ୍କର
ବିଛଣା ପାରି ବସେଇଲି ଅଗଣାରେ
ଏବଂ ମକ୍କାର ରୁଟି ସେକିଲି ଚୁଲିରେ
ଓ ସେମାନେ ସାଥିରେ ଆଣିଥିବା
ଗୁଡ଼ ସହ ଖାଇବା ବାଢ଼ିଲି

ଆଖି ଖୋଲି ଦେଖେ ତ
ଜଣେ ବି ନାହିଁ ଘର ଭିତରେ
ହାତ ମାରି ଦେଖେ ତ
ଚୁଲିରୁ ଲିଭିନାହିଁ ନିଆଁ ଏ ଯାଏ
ଆଉ ଓଠରେ ମୋର
ଲାଖି ରହିଥିଲା
ମିଠା ଗୁଡ଼ର ସୁଆଦ

ସ୍ୱପ୍ନ ଥିଲା ବୋଧହୁଏ !
ସ୍ୱପ୍ନ ହିଁ ହେଇଥିବ !!

ଶୁଣିଛି, କାଲି ରାତିରେ
ଗୁଳି ବର୍ଷିଥିଲା ସୀମାରେ
ଆଉ କିଛି ସ୍ୱପ୍ନଙ୍କର
ମୃତ୍ୟୁ ବି ହେଇଥିଲା ।

# ଫୁଟ୍‌ପାଥ୍

ପାଣ୍ଡବଙ୍କ ଜେଜେବୋପା ବି ଏଠିକି ଆସି
ଧର୍ମର ଠିକଣା କରି ଯା'ନ୍ତି
କୋଉ ଶଳାକୁ ଜଣାଅଛି ଧର୍ମର ଠିକଣା ?
ମନେ ଅଛି କୋଉଠି ?
କେତେ ବର୍ଷ ହବ ମତେ ଏଇନେ ?
ଏ ଶଳା ଗୋଡ଼ଟା ଯେବେଠୁଁ କଟିଥିଲା
ଦୁର୍ଘଟଣାରେ
ମଦପିଇ ଟ୍ରକ୍ ଡ୍ରାଇଭରଟାଏ
ମାଡ଼ି ଆସିଥିଲା ଯେବେ
ଫୁଟପାଥ୍ ଉପରକୁ
ଯେବେ ହାତରୁ ବି ଚାଲି ଯାଇଥିଲା
କାରଖାନାର ଚାକିରିଟା
ସେବେଠୁଁ ଏଇ ଆଶାବାଡ଼ିର ସାହାରାରେ
ଝାଡୁ ବିକି, କାର୍ ସଫା କରି
ଦିନ କଟିଯାଏ !

ଛୋଟା 'ଝୁମୁରୁ' ବି ଛାଡ଼ି ଚାଲିଗଲା
ଏ ଫୁଟପାଥ,
ନିଜର ପ୍ରାଣ ଦେଇ ଦେଲା ସେ
ଛକ ପାଖରେ ଥିବା ପୋଲ ଉପରୁ ଡେଇଁ ।

# ପୋଷ୍ଟ ବକ୍ସ

ଆଜି ବି ଖାଲି ପଡ଼ିଛି
କେତେ ବର୍ଷ ବିତିଗଲାଣି
ଶେଷ ଚିଠି ଆସିବାରେ ।
ଡାକ ପିଅନ ହସି ହସି କହେ,
'ଏବେ ତୋତେ କିଏ ଚିଠି ଲେଖିବ, ବାବୁ ?
ମୃତ୍ୟୁ ଯେବେ ଆସିବ, ତେବେ
ଈଶ୍ୱରଙ୍କ ଚିଠି ନେଇକି ଆସିବି –'

ହେ ଈଶ୍ୱର
ନିଜ ହାତରେ ସେ ଚିଠି ତୁ ଲେଖିବୁ ନା !
କେବେ କେବେ ହାକୁଟି ଉଠିଲେ
ଲାଗେ ଯେମିତି ମୋ ସମୟ ଆସିଗଲା
ହେଲେ କିଛି ବି ଚିଠି ଆସେନା

କେବଳ ଗୋଟେ ବିଜୁଳି ପଇଠ ବିଲ୍
ଆଉ ଜଳକର ନୋଟିସ୍ ଚାଲିଆସେ
ଆପେ ଆପେ କେବଳ
ସବୁ ମାସରେ ।

## ଦଙ୍ଗା

କୌଣସି ଜଣେ ମଣିଷକୁ
ହତ୍ୟା କରାଯାଇ ନ ଥିଲା ସହରରେ,
ଯିଏ ସବୁ ମରିଥିଲେ
ସେ ସବୁ କେବଳ ଥିଲେ
ଗୋଟେଲେଖାଁ ନାଆଁ ।

କାହାରି କେଉଁଠି ବି
ହେଇ ନ ଥିଲା ମୁଣ୍ଡ କାଟ
ଲୋକେ କେବଳ କାଟିଥିଲେ ଟୋପିକୁ
ଯାହା ତଳେ ଲୁଚି ଥିଲା
ଗୋଟାଏ ଗୋଟାଏ ମୁଣ୍ଡ ।

ଏବଂ ଏ ଯେଉଁ ଲାଲ୍ ରକ୍ତ ବହୁଥିଲା
ସଡ଼କ ଉପରେ,
କଟା ହେଉଥିବା ବେଳର
ଆର୍ତ୍ତନାଦ ଥିଲା ତାହା ।

## ସମାଧୀ

କିମିତି ଚୁପ୍‌ଚାପ୍
କିଛିଲୋକ ମରିଯା'ନ୍ତି ଏଠି
ସମାଧୀର ଅନ୍ଧାରିଆ ଆଉ
ସଂକୀର୍ଣ୍ଣ ଜାଗାରେ ।
ସେମାନଙ୍କ ଥଣ୍ଡା ଦିହକୁ
କୋଳେଇ ନିଏ

ନା ନିଶ୍ୱାସ ପ୍ରଶ୍ୱାସର ଶବ୍ଦ,
ନା ବିଳାପ, ନା ଦୀର୍ଘଶ୍ୱାସ
ନା ପାଦଶବ୍ଦ ।

ଏମିତି ଚୁପ୍‌ଚାପ୍
କିଛି ଲୋକ ମରିଯା'ନ୍ତି ଏଠି
ଅନ୍ୟକୁ କଷ୍ଟ ଭୋଗିବାକୁ ପଡ଼େନା
ସମାଧୀ ଦେବା ଲାଗି ସେମାନଙ୍କୁ ।

## ଅମଲତାସ୍

ଘରର ପଛ ଦରଜା ଖୋଲୁ ଖୋଲୁ
ଦେଖି ପାରୁଥିଲି, ଅଳ୍ପ ଦୂରରେ
ଏକାକୀ ଠିଆ ହେଇଥିବା
ଅମଲତାସ୍ ଗଛକୁ,
ଗୋଟେ ଚଢ଼େଇର ଡେଣା ପରି
ମେଲି ଯାଇଥିଲା ଯାହାର ଶାଖା ପ୍ରଶାଖା

ଉଡ଼ିବା ଗପ କହି କହି ପ୍ରତିଦିନ ତାକୁ
ଆହ୍ଲାଦିତ କରୁଥିଲେ ଚଢ଼େଇମାନେ
ପବନରେ ଡେଣା କାଟିବାର କୌଶଳ
ଦେଖାଇ ଦେଖାଇ
ଛୁଇଁ ଦେଉଥିଲେ ବାଦଲକୁ
ଆଉ ବଖାଣୁ ଥିଲେ
ଶୀତଳ ସମୀରଣର ମଧୁର ଗାଥା

ଝଡ଼ର ହାତଧରି ବୋଧହୁଏ ଗତକାଲି
ସେ ବି ପ୍ରୟାସ କରିଥିଲା ଉଡ଼ିବାକୁ
ଦେଖ, କିମିତି ଚିତ୍ ହେଇ ପଡ଼ିଛି ସେ
ରାସ୍ତା ମଝିରେ ।

## ପାଉଁଶ

ଜେଲ୍‌ଖାନାର କୋଠରିରେ
ପଡ଼ି ରହିଥିବା ବିଦ୍ରୋହୀର ଆଖିରେ
ଜମିବା ଆରମ୍ଭ କରେ ପାଉଁଶ ।

ଜଳନ୍ତା କୋଇଲାର
ସ୍ଫୁଲିଙ୍ଗର ଆଖିରେ ବି
ଜମିଯାଏ ପାଉଁଶ
ଧଳାରଙ୍ଗର ମୋତିଆ ବିନ୍ଦୁ ପରି ।

# ଯନ୍ତ୍ରଣା

କିଛି କ୍ଷଣ ଯାଏ ରହେ ଯନ୍ତ୍ରଣା
ବହୁ ବେଳ ଯାଏ ନୁହେଁ -
ଠିକ୍ ଯିମିତି ଶାଖାରୁ ଝରିଯାଏ
ପତ୍ରର ଡେମ୍ଫ,
ଶାଖାଠାରୁ ବିଛିନ୍ନ ହେଲାପରେ
ଶୁଖିଯାଏ କିଛିଦିନ ପରେ,
ଡାଳରୁ ଝରିଯାଇ
କେତେଦିନ ଆଉ ରହିଥାନ୍ତା
ଏ ଯନ୍ତ୍ରଣା !

ନିଃଶେଷ ହେଇଯିବ
ଯେବେ ତା'ର ବଳ,
ଲିଭିବା ଆଗରୁ
ଜଳି ଉଠିବ ଘଡ଼ିଏ,
ଧୂଆଁର ଦୀର୍ଘ ନିଶ୍ୱାସଟିଏ ନେଇ
ସେ ଯନ୍ତ୍ରଣା ବି ଲିଭିଯିବ ।

କିଛି କ୍ଷଣ ଯାଏ ରହେ ଯନ୍ତ୍ରଣା
ବହୁ ବେଳ ଯାଏ ନୁହେଁ ।

## କବି ଗୁଲଜାରଙ୍କ ସହ
## ମନୁ ଦାଶଙ୍କ କଥାବାର୍ତ୍ତାର ଶବ୍ଦ ରୂପ

ମନୁ ଦାଶ : ଆପଣ କବି ହେବା ଲାଗି ମନ ବଳେଇଲେ କାହିଁକି ?

ଗୁଲ୍‌ଜାର୍ : ସେ କଥା ମୁଁ ନିଜେ ବି ଜାଣିନି । ତୁମେ ଜାଣିଛ, ଏଇଟା ଗୋଟେ ଜଳପାତ୍ର ଯିଏ ପାତ୍ରର ତଳପଟୁ ହିଁ ଉତ୍ତାପ ପାଇବା ମାତ୍ରେ, ଛାଏଁ ଛାଏଁ ଉପରେ ବାମ୍ଫ ବାହାରିଥାଏ । ପାତ୍ରରେ ଥିବା ଜଳ ଗରମ ହେବା ମାତ୍ରେ ପାଣି ଟକ୍‌ମକ୍ ଫୁଟିବ ହିଁ ଫୁଟିବ । ଠିକ୍ ସେମିତି, ମୋ ଭିତରେ ଯେବେ କିଛି ଘଟଣା ଫୁଟିବା ଆରମ୍ଭ କରେ, ସେ ବାମ୍ଫକୁ ମୁଁ ବାହାରକୁ ଛାଡ଼ିବା ପାଇଁ ଚାହେଁ, ମୁଁ ଜାଣେନା ସେ ବାମ୍ଫ କେଉଁ ବାଟ ଦେଇ ବାହାରିବ । ହେଇପାରେ ଗୀତ, କବିତା ଅଥବା ଗଳ୍ପ ହେଇ । ତେବେ ପାରିପାର୍ଶ୍ୱିକ ପରିସ୍ଥିତି ଓ ପରିବେଶ ଉପରେ ସେଇଟା ପୂରାପୂରି ନିର୍ଭର କରେ । ମୁଁ ଜାଣେ କବିତା ମୋ ହୃଦୟର ନିକଟତର ଯଦିଓ ସଂଗୀତ ହୃଦୟର ନିକଟତମ ହେଇ ରହି ଆସିଛି । ପିଲାବେଳୁ ସଂଗୀତ ପ୍ରତି ମୋର ଅହେତୁକ ଦୁର୍ବଳତା, ଯଦିଓ ସଂଗୀତର ଅସଲ ତତ୍ତ୍ୱ ସେତେବେଳେ ମୁଁ ଆଦୌ ବୁଝୁ ନ ଥିଲି । ସେ ସମୟରେ ମୁଁ ଆକାଶବାଣୀର କ୍ଲାସିକାଲ୍ ସଂଗୀତ ସବୁଦିନ ସକାଳ ଓ ସନ୍ଧ୍ୟାରେ ଶୁଣୁଥିଲି, ମାତ୍ର ମୋ ବାପା ମା' ମୋତେ ଏଇଥି ପାଇଁ ଶୁଣିବାକୁ ବାରଣ କରୁଥିଲେ,

କାରଣ ସଂଗୀତର ବ୍ୟାକରଣ ସମ୍ପର୍କରେ ମୋର ଟିକିଏ ବି ଜ୍ଞାନ ନ ଥିଲା । ଯେହେତୁ ମୁଁ ଘରେ ସେ ସଂଗୀତ ଶୁଣିପାରୁ ନ ଥିଲି ଏବଂ ମୋର ସୃଷ୍ଟିଶୀଳ ଇଛା ବ୍ୟକ୍ତ ହେବା ପାଇଁ ଆଉ କିଛି ରାସ୍ତା ପାଉନଥିଲା । ବାପା ମା'ଙ୍କ ଦୃଷ୍ଟି ଅଗୋଚରରେ ରହି ମୁଁ ଚୁପ୍‌ଚାପ୍ କବିତା ଲେଖିବା ପାଇଁ ମନ ବଳାଇଲି । ରେଡ଼ିଓରୁ ସଂଗୀତ ଶୁଣି ତାକୁ ଅଭ୍ୟାସ କରିବାକୁ ହେଲେ ଘରେ ଶବ୍ଦ ହେଉଥିଲା, ମାତ୍ର ଚୁପ୍‌ଚାପ୍ କବିତା ଲେଖିବା ବେଳେ ସେପରି କିଛି ଶବ୍ଦ ସୃଷ୍ଟି ହେବାର ଆବଶ୍ୟକତା ହିଁ ନ ଥିଲା ।

ମନୁ ଦାଶ : **କବିତାର ଶୈଳୀ ପାଇଁ କାହା ଦ୍ୱାରା ଆପଣ ପ୍ରଭାବିତ ହେଇଛନ୍ତି ?**

ଗୁଲଜାର୍ : ମୋତେ ଜଣାନାହିଁ ସେ କଥା । ତେବେ ଜାଣିଶୁଣି ମୁଁ କାହାର ଅନୁକରଣ କରିନି । ଏହାର କାରଣ ଏଇଆ ହେଇପାରେ ଯେ ମୋ ଉପରେ ମାତ୍ର ଜଣକର ପ୍ରଭାବ ପଡ଼ିନି । ମୋ ଶିକ୍ଷା ଦୀକ୍ଷା ଉର୍ଦ୍ଦୁ ଭାଷାରେ ହେଇଛି । ତେଣୁ ମୁଁ ଗାଲିବ୍, ମୋମେନ୍ ଏବଂ ଅନ୍ୟାନ୍ୟ ଦିଗ୍‌ଗଜ କବି ଯଥା ଇକ୍‌ବାଲ୍ ଏବଂ ମୋ ସମୟର ଶାହିର୍ ଲୁଧିଆନୀଙ୍କୁ ପଢ଼ିଛି । ମାତ୍ର ମୋର ଯେତେଦୂର ମନେପଡୁଛି ଜୀବନର ସବୁଠୁ ଅଭୁଲା ମୁହୂର୍ତ୍ତ ତଥା ରାସ୍ତା ବଦଳିବା ସମୟ ହେଉଛି, ଯେତେବେଳେ ମୁଁ ଟାଗୋର୍‌ଙ୍କ ବହିର ଅନୁବାଦ ସବୁ ପଢ଼ିବା ଆରମ୍ଭ କଲି । ପ୍ରଥମଥର ପାଇଁ ଟାଗୋର୍‌ଙ୍କ ଅନୁବାଦ ବହି 'ମାଳୀ' ପଢ଼ିବା ଆରମ୍ଭ କଲି ଆକସ୍ମିକ ଭାବେ ଏବଂ ସେଇଠୁଁ ହିଁ ମୁଁ ଲେଖାଲେଖି କରିବା ଲାଗି ମନ ବଳେଇଲି । ସେତେବେଳେ ଯେତେସବୁ ବାଜେ ଗୋଇନ୍ଦା ଉପନ୍ୟାସ ପଢୁଥିଲି ମୁଁ । ଗୋଟେ ପାଠାଗାରରୁ ସେସବୁ ବହି ମୁଁ ଉଧାର ଆଣୁଥିଲି, ଯେଉଁ ପାଠାଗାରକୁ ମାସିକ ଚାରିଅଣା ଚାନ୍ଦା ଦେଇ ମୁଁ ସଦସ୍ୟ ହେଇଥିଲି । ବହୁତ ପଢୁଥିଲି ମୁଁ । ପାଠାଗାରର ଦାୟୀତ୍ୱରେ ଥିବା ଲୋକଟି ମୋ ଉପରେ ବିରକ୍ତ ହେଇ ଯାଇଥିଲା, କାରଣ ସାରା ମାସ ମୁଁ ତା' ପାଖରୁ ବହି ନେବାକୁ ପହଞ୍ଚି ଯାଉଥିଲି । ବିରକ୍ତିରୁ ମୁକ୍ତି ପାଇବା ଲାଗି ଦିନେ ସେ ଲୋକଟି ଶସ୍ତା ଗୋଇନ୍ଦା ବହି ଦେବା ବଦଳରେ ମୋତେ ଟାଗୋରଙ୍କ 'ମାଳୀ' (ଗାର୍ଡ଼ନର୍) ବହିଟି ଦେଇଦେଲା । ତାର ଉଦ୍ଦେଶ୍ୟ ଥିଲା ଗୋଇନ୍ଦା ବହି ସବୁ ନେବାରୁ ମୋତେ ବାରଣ କରିବା । ପ୍ରଥମ ଥର ପାଇଁ ଯେବେ ମୁଁ ଟାଗୋରଙ୍କୁ ପଢ଼ିଲି ମୁଁ ସେ ବହିଟି ତାକୁ ଆଉ ଫେରାଇଲି ନାହିଁ । ପ୍ରଥମଥର ପାଇଁ ମୁଁ ବହିଟେ ଚୋରି କଲି ।

ମନୁ ଦାଶ : **କବିତା ଲେଖିବା ଆଗରୁ କିପରି ନିଜକୁ ପ୍ରସ୍ତୁତ କରିଥାନ୍ତି ଆପଣ ?**

ଗୁଲ୍‌ଜାର୍ : ଦୁଧ ମନ୍ଥିବା ପରି, ମୁଁ ଭାବୁଛି, ଏହା ପ୍ରଥମେ ମନ ଭିତରେ ମନ୍ଥି ହୁଏ । ଚୁପ୍‌ଚାପ୍ ଚାଲିଥାଏ ଏ କାମଟି । ଥରେ ମନ୍ଥନ ପ୍ରକ୍ରିୟାଟି ସରିଗଲେ, ଆପେ ଆପେ ଲହୁଣୀ ଉପରକୁ ଉଠିଆସେ । ଲହୁଣୀ ଉପରେ ଭାସିବା ମାତ୍ରେ ମୁଁ ତାକୁ ଛାଣି ନେଇଯାଏ । ଏ ପ୍ରକ୍ରିୟା ବହୁକାଳ ଧରି ଚାଲେ । ମାତ୍ର ମୁଁ ଏ ପ୍ରକ୍ରିୟା ଚାଲୁ ରଖିଥାଏ ଯେପର୍ଯ୍ୟନ୍ତ ଏହା ପୂରାପୂରି ବନ୍ଦ ନ ହେଉଛି ।

ମନୁ ଦାଶ : **କବିତା ଆଉ ଅକବିତା ଭିତରେ ଆପଣ ଫରକ କିଭଳି ଜାଣନ୍ତି ?**

ଗୁଲ୍‌ଜାର୍ : ସେଇଠି ସବୁବେଳେ ବିପଦ ରହିଛି । ଯେଉଁ ଲେଖା କବିତା ନୁହେଁ ତାକୁ ଅମେ ଗଦ୍ୟ ରଚନା କହିପାରିବା । ମାତ୍ର ସମୟାନୁକ୍ରମେ ଜଣେ ଅନ୍ତତଃ ଜାଣିପାରେ – କେଉଁଟି କବିତା, କେଉଁଟି ନୁହେଁ । କେବଳ ପଦକୁ ପଦ ମିଳେଇ ଦେଲେ କବିତା ହେଇ ଯାଏନା, ସୁନ୍ଦର ଭାବେ ଲେଖାଯାଇଥିବା ଗଦ୍ୟ ବି କବିତା ବୋଲି ତ କୁହାଯାଇଛି । ଠିକ୍ ସେଇପରି, ମୁଁ କହିବି, ଚମତ୍କାର ଭାବେ କରାଯାଇଥିବା କଥାବାର୍ତ୍ତା ବି କବିତା । କବିତା ମୁଁ ଆଦୌ ଗାଇ ପାରେନା, ମାତ୍ର ଭଲ କରି ଜାଣିପାରେ ଯେ ତାହା କବିତା ନା କବିତା ନୁହେଁ ।

ମନୁଦାଶ : **କବିତାରେ କେଉଁ ମୌଳିକ ଭ୍ରାନ୍ତଧାରଣା କଥା ଭାବିଲେ ଆପଣଙ୍କୁ ବିରକ୍ତ ଲାଗେ ? ସେ ସବୁକୁ ଆପଣ କିପରି ସଜାଡ଼ିବେ ?**

ଗୁଲ୍‌ଜାର୍ : ଯଦିଓ ଜଣେ କବିତାରେ ଭଲ ଶବ୍ଦ, ଯତିପାତ ଆଦି ପ୍ରୟୋଗ କରିଥାଏ ମାତ୍ର କେବଳ ଲେଖିବା ପାଇଁ କବିତାଟି ଲେଖିଥାଏ – ସେକଥା ହିଁ ବେଶି ବିରକ୍ତ କରିଥାଏ ମୋତେ । ମୁଁ ଲେଖୁଥିବା ଉର୍ଦ୍ଦୁ ଭାଷାରେ କ'ଣ ସବୁ ଘଟୁଛି ସେ କଥା ମୁଁ ତୁମକୁ କହିବାକୁ ଚାହେଁ । ବିଂଶ ଶତାବ୍ଦୀର ଅନେକ ଉର୍ଦ୍ଦୁ କବିତା ଊନବିଂଶ ଶତାବ୍ଦୀର ଭାଷାରେ ହିଁ ଲେଖାଯାଇଛି । କେବଳ ଲେଖିବା ବାହାନାରେ ସେମାନେ ସେଇ ଚର୍ବିତ ଚର୍ବଣ କଥାକୁ ବାରମ୍ବାର ଦୋହରାଇ ଥା'ନ୍ତି । ତୁମେ ଜାଣିଛ, ବିଂଶ ଶତାବ୍ଦୀରେ ହିଁ ସାରା ଶିଳ୍ପାନୁଷ୍ଠାନର ଅଭ୍ୟୁଦୟ ହେଲା, ଆମେ ଉଡ଼ାଜାହାଜ଼ ଉଦ୍ଭାବନ କଲେ, ସାଇକେଲ, ବିଦ୍ୟୁତ୍ ଆଉ ରେଳବାଇ ମଧ୍ୟ ଉଦ୍ଭାବନ କଲେ । ମାତ୍ର ଏସବୁ ଉଦ୍ଭାବନ ସମ୍ପର୍କରେ ବିଂଶ ଶତାବ୍ଦୀର କବିତାରେ କ୍ୱଚିତ୍ ଦେଖିବାକୁ

ମିଳେ । ନା ସେଥିରେ ଆଧୁନିକ ଜୀବନ ଯାପନର କୌଣସି ଛିଟା ଥାଏ । ଆମ ପୃଥିବୀର ଉଦ୍ଭାବନ କଥା ବି ଛାଡ଼, ମହାକାଶରେ ଆମେ ରକେଟ ପଠାଇବା କଥା ବି କେଉଁଠି ଉଲ୍ଲେଖ ନାହିଁ । ଆଜି ବିଜ୍ଞାନର ଏତେ ଅଗ୍ରଗତି ସତ୍ତ୍ୱେ ବି ଆମେ ମଙ୍ଗଳ ଆଉ ବୁଧ ଗ୍ରହକୁ ଜ୍ୟୋତିଷଶାସ୍ତ୍ର ଦୃଷ୍ଟିରେ ହିଁ ଦେଖୁଛୁ । ବିଂଶ ଶତାବ୍ଦୀର କବିତାରେ ବିଂଶ ଶତାବ୍ଦୀର ତତ୍କାଳୀକ ଚିତ୍ର କ୍ୱଚିତ୍ ଦେଖିବାକୁ ମିଳେ । ତୁମେ ଜାଣିଛ, ଧ୍ୱନି ଜଗତରେ ବି ଅଭ୍ୟୁଦୟ ଘଟିଥିଲା । ଆମେ ମହମରୁ ଟେପ୍ ସାହାଯ୍ୟରେ ସ୍ୱର ବା ଧ୍ୱନିକୁ ରେକର୍ଡ଼ିଂ କଲୁ । ମାତ୍ର ସେ କଥା ଆମ ସାହିତ୍ୟକୁ ଆସି ପାରିଲାନି । ସାହିତ୍ୟ ନିଜ ସମୟ ଏବଂ ଇତିହାସ ଏବଂ ଜନମାନସର ମାନସିକତାର ପ୍ରତିଫଳନକୁ ଲିପିବଦ୍ଧ କରିଥାଏ । ଯଦି କେବେ ତୁମେ ଉର୍ଦ୍ଦୁ ମୁଶାୟରା (କବି ସମ୍ମିଳନୀ)କୁ ଯାଇଥିବ, ପ୍ରାୟ ଅଧିକାଂଶ ସମୟରେ ଦେଖିବ ଯେ ଜୀବନରେ କେବେ ବି ଜଣେ କବି ଯିଏ ଶେରଓ୍ୱାନୀ ପିନ୍ଧି ନ ଥାଏ, ସିଏ ବି ସେଠି ଶେରଓ୍ୱାନୀ ପିନ୍ଧି ମଞ୍ଚରେ ତୂଳା ଗଦିରେ ବସିଥିବ ଅଥଚ ସାରା ଦର୍ଶକମାନେ ସାମ୍ନାରେ ଆରାମ୍‌ରେ ଚେୟାରରେ ବସିଥିବେ । ସାରା ଜୀବନ ଜିନ୍ ଏବଂ ଟି-ସାର୍ଟ ପିନ୍ଧୁଥିବା ବିଚରା କବିଟିକୁ କାହିଁକି ତୂଳାଗଦିରେ ଶେରଓ୍ୱାନୀ ପିନ୍ଧି ବସିବାକୁ କୁହାଯାଏ ? ଏ ପ୍ରକାର ବିକୃତ ପରମ୍ପରା କାହିଁକି ? ଏଇ ସବୁ ହିଁ ମୋତେ ବିରକ୍ତି ଆଣିଦିଏ ।

ମନୁ ଦାଶ : **କବିତାଟିଏ କିପରି ଆସେ ଆପଣଙ୍କ ପାଖକୁ ?**

ଗୁଲ୍‌ଜାର୍ : ଗରମ ପାଣି ହାଣ୍ଡିରୁ ଉଠିବା କଥା ମୁଁ ଆଗରୁ କହିସାରିଛି ତୁମକୁ ।

ମନୁ ଦାଶ : **ଆପଣଙ୍କ କବିତାରେ ସମୟହୀନତାର ଆବେଦନ କିମିତି ଆସିଥାଏ ?**

ଗୁଲ୍‌ଜାର୍ : ଯଦି ତୁମ କବିତା ତୁମେ ବଞ୍ଚୁଥିବା ସମୟର କଥା କହେ, ତୁମ ସମାଜ ତଥା ତୁମ ଯୁଗର କଥା କହେ, ତୁମେ ବଞ୍ଚୁଥିବା ଜୀବନର କଥା କୁହେ, ତେବେ ସମୟର ଉର୍ଦ୍ଧ୍ୱକୁ ଉଠିପାରିବ କବିତା, ନଚେତ ତା'ର ଅକାଳ ମୃତ୍ୟୁ ଅବଶ୍ୟମ୍ଭାବୀ । ସମସ୍ତେ ଏ ପ୍ରକାର ରଚନା କରିପାରିବେ ନାହିଁ, ବିଶିଷ୍ଟ କବି ବା ଲେଖକଙ୍କ ଦ୍ୱାରା ଏହା ସମ୍ଭବ । ସେଇଥିପାଇଁ ଆଜି ବି ଟାଗୋର୍ ଆପଣଙ୍କର ପ୍ରିୟ, ସେଇ କାରଣରୁ ଆଜି ବି ଆପଣଙ୍କ ହୃଦୟରେ ମହମ୍ମଦ ବୈକମ୍ ବଶୀର ସ୍ଥାନ ବାଛି ନେଇଛନ୍ତି ।

ମନୁଦାଶ : **କବିତାର ମୌଳିକ ତଥା ଜରୁରୀ ପ୍ରବୃତ୍ତି ସମ୍ପର୍କରେ କହିବେ କି ? ସମୟାନୁକ୍ରମେ ସେ ପ୍ରବୃତ୍ତି କ'ଣ ବଦଳିଯାଏ ?**

ଗୁଲ୍‌ଜାର୍ : ଏବେ ତ ମୁଁ ସାହିତ୍ୟର ଗୁଣ ସମ୍ପର୍କରେ କହିଲି । ସେଇ ଏକାକଥା ହିଁ କବିତା ପାଇଁ ପ୍ରଯୁଜ୍ୟ । ଗୋଟିଏ କ୍ଷଣ ପାଇଁ ସେ ଅଭିଜ୍ଞତା ଆସିପାରେ । ମାତ୍ର ସେ ଅଭିଜ୍ଞତା ସାରା ଜୀବନ ପାଇଁ ମହନୀୟ ହେଇପାରେ । ମୁଁ ଭାବୁଛି, ତୁମ କହିବା ଶୈଳୀ ଜଣକୁ ଅଭିଭୂତ ଅଥବା ଆମୋଦିତ କରିବା ଦରକାର । ଅନ୍ତତଃ ଏତିକି ଆବଶ୍ୟକତା କବିତାଠାରୁ । ହଁ, ସମୟାନୁକ୍ରମେ ଏହାର ପରିବର୍ତ୍ତନ ବି ହେଇପାରେ ।

ମନୁ ଦାଶ : **କବିତାରେ ସବୁଠୁ ବଡ଼କଥା କ'ଣ ?**

ଗୁଲ୍‌ଜାର୍ : ଏବେ ତ କହିଲି । କବିତାର ଅନ୍ତତଃ ଦୁଇଟି ଗୁଣ ରହିବା କଥା - ଅଭିଭୂତ ଅଥବା ଆମୋଦିତ ।

ମନୁ ଦାଶ : **କବିତା ସହ ସତ୍ୟର ସମ୍ପର୍କ କ'ଣ ବୋଲି ଆପଣ ଭାବୁଛନ୍ତି ?**

ଗୁଲ୍‌ଜାର୍ : ଖୁବ୍ ସରଳ ତଥା ସ୍ପଷ୍ଟ ଭାବେ ମୁଁ ପ୍ରଥମେ କହିବାକୁ ଚାହେଁ ଯେ କବିତା ହିଁ ସତ୍ୟର ନିର୍ଯ୍ୟାସ । 'ଅନୁଭବ' ହିଁ ଏହାର ଶେଷକଥା । କବିତା ବିଶ୍ଳେଷଣ ନୁହେଁ, ବର୍ଣ୍ଣନା ବି ନୁହେଁ, ଏହା ଦର୍ଶନ ବି ନୁହେଁ, ଗଭୀରତା ବି ନୁହେଁ । 'ଅନୁଭବ' ହିଁ ଏହାର ମୁଖ୍ୟ କଥା । ଗୋଟିଏ ଉଦାହରଣ ଏଠି ଦେବି । ମନେ କରନ୍ତୁ ସେଇଟି ହେଉଛି - 'ବର୍ଷା' । ବର୍ଷା କେମିତି ହୁଏ ? ମେଘମାଳା କିପରି ଉପରକୁ ଉଠନ୍ତି ? ବର୍ଷା କିପରି ହୁଏ-ହେଉଛି ଗୋଟାଏ ବୈଜ୍ଞାନିକ ତତ୍ତ୍ୱ । ତାହା ହିଁ ଗୋଟେ ସୂଚନା । ବର୍ଷାକୁ ନେଇ ଅନେକ କାହାଣୀ ରହିଛି - 'ମେଘ' ଆଉ 'ମେଘଦୂତ' । ମାତ୍ର ମେଘକୁ ନେଇ କାଳିଦାସଙ୍କ ଅନୁଭବ ହିଁ ପାଲଟିଗଲା ମହାନ୍ କବିତା । ମେଘମାଳାର ଯାତ୍ରା ନାହିଁ ସେଥିରେ, ନା ଅଛି ସେମାନଙ୍କ ବର୍ଣ୍ଣନା, ନା କେଉଁ ପଥ ଦେଇ ଗତି କରୁଛନ୍ତି ସେମାନେ । ମାତ୍ର ବର୍ଷାର ଅନୁଭବ ଦେଇଛନ୍ତି ସେ । ସାରା କବିତା ପଢ଼ିବା ପରେ ଲାଗିବ ତୁମେ ବର୍ଷାରେ ଏକଦମ୍ ଭିଜି ଯାଇଛ । ବର୍ଷାରେ ନ ଯାଇ ବି ତୁମେ ଭିଜି ଯାଇପାରୁଛ - ଏହା ହିଁ କବିତାର କିମିଆଁ ।

**ମନୁ ଦାଶ : କବିତାରେ ପରମ୍ପରା ସହ ସୃଜନଶୀଳତାର ସମ୍ପର୍କ କ'ଣ ?**

ଗୁଲ୍‌ଜାର୍ : ମୋର କହିବା କଥା ହେଉଛି ଯେ ପରମ୍ପରାରେ ତୁମ କହିବା କଥା ସବୁ ଅନ୍ୟମାନେ କହିସାରିଥାନ୍ତି, ମାତ୍ର ସୃଜନଶୀଳତାରେ ତୁମେ ତୁମ ନିଜକଥା ହିଁ କହିପାରିବ । କାରଣ ନିଜର ଅନୁଭବକୁ ଆମେ କାହାରି ସହ ଆଦାନ ପ୍ରଦାନ କରି ପାରିବା ନାହିଁ । ଯେମିତି 'ସୂର୍ଯ୍ୟାସ୍ତ'ର ଅନୁଭବ କେବଳ ମୋ ନିଜର । ସମୁଦ୍ରବେଳାରେ ଦୁଇ ହଜାର ଲୋକ 'ସୂର୍ଯ୍ୟାସ୍ତ' ଦେଖୁଛନ୍ତି । ଗୋଟିଏ ମାତ୍ର 'ସୂର୍ଯ୍ୟାସ୍ତ' ଘଟି ଚାଲିଛି, ମାତ୍ର ଏକା ପ୍ରକାରର ଅନୁଭବ କରୁନାହାନ୍ତି ଏ ସୂର୍ଯ୍ୟାସ୍ତକୁ । ମୋର କହିବା କଥା ଯେ ମୋତେ ହିଁ ଖୋଜିବାକୁ ହେବ ଏ 'ସୂର୍ଯ୍ୟାସ୍ତ'ର ଅନୁଭବକୁ ଶବ୍ଦରୂପ ଦେବା ପାଇଁ । ପାରମ୍ପରିକ ଭାବେ କିପରି ଏ ସନ୍ଧ୍ୟାକୁ ବର୍ଣ୍ଣନା କରାଯାଇଛି ସେ ଶବ୍ଦକୁ ମୁଁ ଦୋହରାଇବି ନାହିଁ ।

**ମନୁ ଦାଶ : ଭୂମଣ୍ଡଳୀକରଣର ପ୍ରଭାବକୁ କ'ଣ କବିତା ପ୍ରତିହତ କରିପାରିବ ବୋଲି ଆପଣ ଭାବୁଛନ୍ତି ?**

ଗୁଲ୍‌ଜାର୍ : ଏହାର ଦୁଇଟା ଦିଗ ରହିଛି, ଦୁଇ ପ୍ରକାରର ସମସ୍ୟା । ପ୍ରଥମଟି ହେଉଛି, ଭୂମଣ୍ଡଳୀକରଣ ଦ୍ୱାରା ବିଶ୍ୱର ପ୍ରତିଟି ମଣିଷର ଅନୁଭବ ଓ ବକ୍ତବ୍ୟ ପରସ୍ପର ପାଖରେ ଅକ୍ଲେଶରେ ପହଞ୍ଚି ପାରିଛି । କାରଣ, ରାଜନୈତିକ ବିଭାଜନ ଅଥବା ସାମାଜିକ ବିଭାଜନ ନୁହେଁ, ବରଂ ମଣିଷର ଅଭିଜ୍ଞତା ହିଁ ଶେଷ କଥା । ବିଶ୍ୱ ତୁଳନାରେ ପୃଥିବୀ ଏକାକାର ହେଇଯାଇଛି ଏବେ । ଭୂମଣ୍ଡଳୀକରଣ ଏବେ, ପ୍ରକାରାନ୍ତରେ, ନିଜ ବକ୍ତବ୍ୟ ଶୁଣୁଛି ଏବଂ ଦେଖୁଛି । ତାହାହିଁ ସମ୍ପର୍କ । ସେଇଥିପାଇଁ କହିଲି, ଏହାର ଦୁଇଟି ଦିଗ ରହିଛି ।

## ମନୁ ଦାଶଙ୍କ ଅନ୍ୟାନ୍ୟ ରଚନା :

**କବିତା ସଂଗ୍ରହ :**
ଆଞ୍ଜୁଳେ ସମୁଦ୍ରର ଢେଉ (୨୦୦୨)
କଳା ହରିଣ (୨୦୦୮)
ଖୈର, ଅଗଲୀବାର୍ ଫିର୍ ଆଉଙ୍ଗି (ହିନ୍ଦୀ) (୨୦୦୯)

**ଗଳ୍ପ ସଂଗ୍ରହ :**
କଣ୍ଢେଇ ନାଚ (୨୦୦୦)

**ପ୍ରବନ୍ଧ / ଆଲୋଚନା ସଂଗ୍ରହ :**
ଗୁଡ୍‌ଲିର ଜେଜେବାପା (୧୯୯୯)
ପ୍ରିୟ ଗଣକ (୨୦୦୧)
ଭୀରୁ ଭାରତ (୨୦୦୫)
ବଞ୍ଚିବାର ବାଟ (୨୦୦୭)

**ଅନୁବାଦ ସଂଗ୍ରହ :**
ମୋହନ ଦାସ (ମୂଳରଚନା : ଉଦୟ ପ୍ରକାଶ) (୨୦୦୮)
ଅଦୃଶ୍ୟ ମାନଚିତ୍ର (ମୂଳ କବିତା : ଉଦୟନ ବାଜପେୟୀ) (୨୦୦୯)
ବାଘ (ମୂଳ କବିତା : କେଦାର ନାଥ ସିଂହ) (୨୦୦୯)

**ସମ୍ପାଦନା ସଂଗ୍ରହ :**
ବସନ୍ତର ନିଛକ ଜିଲ୍ଲାରେ (ସହ ସମ୍ପାଦନ) (୨୦୦୦)
Ninety-nine Words (An anthology of English
Poems by Indian poets) (2005)
Dhauli Review (English Journal on Literature) (2008)



୧୯୫୪ ରେ ଦିଲ୍ଲୀରେ ଜନ୍ମ ଗ୍ରହଣ କରିଥିବା ଅର୍ପଣା କୌର୍ ଭାରତର ଜଣେ ଆଗଧାଡ଼ିର ଚିତ୍ରଶିଳ୍ପୀ । ନିଜେ ନିଜେ ଶିଖିଥିବା ତାଙ୍କ ଚିତ୍ରକଳାରେ ନାରୀ ଓ ସେମାନଙ୍କ ପ୍ରତି ଭାରତରେ ବଢୁଥିବା ହିଂସା ହିଁ ମୁଖ୍ୟ ବିଷୟବସ୍ତୁ ଭାବେ ସ୍ଥାନ ପାଇଥାଏ ।

ଭାରତ ତଥା ଭାରତ ବାହାରେ ସେ ଅନବରତ ଚିତ୍ର ପ୍ରଦର୍ଶନୀରେ ଅଂଶ ଗ୍ରହଣ କରି ଦେଶର ଗୌରବ ବଢ଼ାଇଛନ୍ତି । ଏଥି ଭିତରେ ରହିଛି ବାଗଦାଦ୍ ଦ୍ୱିବାର୍ଷିକ (୧୯୮୬), ଆଲଜିୟର୍ସ ଦ୍ୱିବାର୍ଷିକ (୧୯୮୭), ସତ୍ୟମା ଓ ଗ୍ଲେନ୍‌ବାରା ମ୍ୟୁଜିୟମ୍‌ରେ ସମୂହ ଚିତ୍ରକଳା ପ୍ରଦର୍ଶନୀ, ମ୍ୟୁଜିୟମ୍ ଅଫ୍ ମଡର୍ଣ୍ଣ ଆର୍ଟ, ବ୍ରାସିଲା, ସାଓ ପାଓଲୋ ଏବଂ ରିଓ-ଡି ଜେନେରୋ (୧୯୯୪-୯୫) ।

ଏହା ବ୍ୟତୀତ, ପରମାଣୁ ବିସ୍ଫୋରଣର ୬୦ ବର୍ଷ ପୂର୍ତ୍ତି ଉପଲକ୍ଷେ ଜାପାନ ସରକାରଙ୍କ ପାଇଁ ଅର୍ପଣା କୌର୍ ସ୍ଥାୟୀ ଚିତ୍ରକଳା ଆଙ୍କିଛନ୍ତି ହିରୋସୀମା ମ୍ୟୁଜିୟମ୍‌ରେ । ଭାରତର ବିଭିନ୍ନ ପୁରସ୍କାର ପାଇଥିବା ଚିତ୍ରଶିଳ୍ପୀ ଅର୍ପଣା କୌର୍‌ଙ୍କୁ ଲଳିତ କଳା ଅକାଦମୀ ୧୯୯୦, ୯୧ ଓ ୯୨ରେ ବିଶିଷ୍ଟ ଚିତ୍ରଶଳ୍ପୀ ଭାବେ ଚୟନ କରିଛି । ପୃଥିବୀର ବିଭିନ୍ନ ଦେଶର ବୃହତ୍ ଆର୍ଟ ଗ୍ୟାଲେରୀରେ ଅର୍ପଣାଙ୍କ ଚିତ୍ର ପ୍ରଦର୍ଶିତ ଏବେ ବି ହେଉଅଛି ।

ସେ ଏବେ ଦିଲ୍ଲୀରେ ବସବାସ କରୁଛନ୍ତି ।



ଭାରତୀୟ ସାହିତ୍ୟ ଏବଂ ସଂଗୀତ ଜଗତରେ ଗୁଲ୍‌ଜାର୍ ଏକ ସ୍ୱର୍ଦ୍ଧିତ ଉଚ୍ଚାରଣ । ସଫଳ ଗୀତିକାର, ପଟ୍ଟକଥା ଓ ସଂଳାପ ଲେଖକ, ଚଳଚ୍ଚିତ୍ର ନିର୍ଦ୍ଦେଶକ, କବି ଓ ଗାଳ୍ପିକ ଭାବେ ସେ ବେଶ୍ ଲୋକପ୍ରିୟ । ସୃଜନ ପ୍ରକ୍ରିୟାରେ ନିଜର ପ୍ରୟୋଗବାଦୀ ଚିନ୍ତାଧାରା ତାଙ୍କୁ ଅନ୍ୟମାନଙ୍କଠାରୁ ଭିନ୍ନ ପ୍ରମାଣିତ କରିଛି ।

୧୯୩୪ରେ ଦୀନା (ଏବେ ପାକିସ୍ଥାନ ଅଧିକୃତ) ରେ ଜନ୍ମ ଗ୍ରହଣ କରିଥିବା ଗୁଲଜାର ଜଣେ ମୋଟର ମେକାନିକ୍ ଭାବେ ଜୀବନ ଆରମ୍ଭ କରି ପରବର୍ତ୍ତୀ ସମୟରେ ୧୯୬୩ ରେ ବିମଳ ରାୟଙ୍କ ସହ ଚଳଚ୍ଚିତ୍ରରେ ସହ-ନିର୍ଦ୍ଦେଶନା ଦେଇଥିଲେ । ପରବର୍ତ୍ତୀ କାଳରେ ସଫଳତା ତାଙ୍କୁ ଅନୁଧାବନ କରିବାରେ ଲାଗିଛି । ଭାରତର ପ୍ରଥମ ଗୀତିକାର ଗୁଲ୍‌ଜାର୍‌ଙ୍କ 'ଜୟ ହୋ' ଗୀତ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ 'ଓସ୍କାର' ପୁରସ୍କାର ପାଇବା ଆଗରୁ ତାଙ୍କୁ କୋଡିଏ ଥର ପ୍ରସିଦ୍ଧ 'ଫିଲ୍ମ ଫେୟାର୍ ଆୱାର୍ଡ' ଏବଂ ସାତଥର 'ନ୍ୟାସନାଲ୍ ଆୱାର୍ଡ' ମିଳି ସାରିଛି । ସାହିତ୍ୟ ପାଇଁ ସେ ସମ୍ମାନିତ ହେଇଛନ୍ତି କେନ୍ଦ୍ର ସାହିତ୍ୟ ଅକାଦେମି ପୁରସ୍କାରରେ । ସମ୍ମାନ ଜନକ ପଦ୍ମଭୂଷଣ ସମ୍ମାନ ସହ, ଶିମଳାସ୍ଥିତ ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଆଡଭାନ୍‌ସ ଷ୍ଟଡିଜ୍' ସଂସ୍ଥା ତରଫରୁ ତାଙ୍କୁ ମିଳିଛି 'ଲାଇଫ୍ ଟାଇମ୍ ଏଚିଭ୍‌ମେଣ୍ଟ୍ ଫେଲୋସିପ୍' ।

ଗୁଲ୍‌ଜାରଙ୍କ ନିର୍ଦ୍ଦେଶିତ ଚଳଚ୍ଚିତ୍ରମାନଙ୍କ ଭିତରୁ ଖୁସ୍‌ବୁ, ଲିବାସ୍, ଆନ୍ଧି, ହୁ-ତୁ-ତୁ, ମ୍ୟାଚିସ୍, ପରିଚୟ, ଅଙ୍ଗୁର୍, ଲେକିନ୍ ଆଦି ତାଙ୍କୁ ସଫଳ ନିର୍ଦ୍ଦେଶକଙ୍କର ଭୂମିକାରେ ପହଁଚାଇ ପାରିଛି ।

ଏହାଛଡ଼ା, ତାଙ୍କ ରଚିତ କବିତା ସଂଗ୍ରହ ଭିତରେ ଅଛି- ଜାନ୍‌ମ; ଏକ୍ ବୁନ୍ଦ୍ ଚାନ୍ଦ୍; କୁଛ୍ ନଜ୍‌ମେ; ଔର କୁଛ୍ ନଜ୍‌ମେ; ସାଇଲେନସେସ୍; ପୁଖରାଜ, ଚନ୍ଦ ପୁଖରାଜ କା; ରାତ ପଶମିନେ କି; ରାତ, ଚାନ୍ଦ ଔର୍ ମେଁ; ୟ୍ୟାର ଜୁଲାହେ । ଗଳ୍ପ ସଂଗ୍ରହ ଭିତରେ 'ଚୌରସ୍ ରାତ୍' ଏବଂ 'ରବି ପାର୍' ମହତ୍ୱପୂର୍ଣ୍ଣ କୃତି ଭାବେ ବିବେଚନା କରାଯାଏ । ଏହାଛଡ଼ା ପିଲାମାନଙ୍କ ପାଇଁ ବି ଗୁଲଜାର୍‌ଙ୍କ ଅନବଦ୍ୟ କୃତି ହେଉଛି 'ବୋସ୍‌କୀ କା ପଞ୍ଚତନ୍ତ୍ର', ଯାହା କେଇ ଖଣ୍ଡରେ ପ୍ରକାଶିତ ହେଇଛି ।

ସଂପ୍ରତି ମୁମ୍ବାଇରେ ଅବସ୍ଥାପିତ ।

cover painting : **arpana caur**
cover design : **saroj bal**

**Jhipi Jhipi Barsha**
Poems by **Gulzar**

ପ କ୍ଷୀ ଘ ର  ପ୍ର କା ଶ ନୀ

A **Pakshighar** Publication 2010